# ଆତ୍ମାର ଆତ୍ମଲିପି



## ସୁଧାଂଶୁବାଳା ପଣ୍ଡା

ଆବିର୍ଭାବ : ୬.୮.୧୯୪୧ ତିରୋଧାନ : ୧.୭.୧୯୯୫



ସୁଧାମୟ ସୃଷ୍ଟି ମଧୁମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ ।

ଭକ୍ତକବି ମଧୁସୂଦନ

# ସୁଧାଂଶୁବାଳା......ଏକ ବହୁମୁଖୀ ପ୍ରତିଭା

**ଗଳ୍ପ ସଙ୍କଳନ**

୧. ଯେ ଅଛୁଆଁ ଛୁଇଁଦେଲା
୨. ନବ ବର୍ଷର ସକାଳ
୩. କଶ୍ଚିତ୍ କାନ୍ତା
୪. ବିଭକ୍ତିହୀନ ଗଦ୍ୟ
୫. ପ୍ରାଣ ଓ ପ୍ରଣୟ
୬. ବ୍ୟଥା ଓ ବେପଥୁ (ଯନ୍ତ୍ରସ୍ଥ)
୭. ତିଥି ଅତିଥିର ସ୍ମାରକୀ (ଯନ୍ତ୍ରସ୍ଥ)
୮. MOON AND I (ଯନ୍ତ୍ରସ୍ଥ)

**କବିତା ଓ ଗୀତିକବିତା**

୧. ମନ୍ଦାକିନୀର କୂଳେ
୨. ମୋ ଗୀତିକବିତା (ଯନ୍ତ୍ରସ୍ଥ)

**ନାଟକ**

୧. ବକୁଳ ବନର ରାଧା
୨. ନାଟକଗୁଚ୍ଛ (ଯନ୍ତ୍ରସ୍ଥ)

**ଉପନ୍ୟାସ**

୧. ଅବ୍ୟକ୍ତ ବେଦନା
୨. ସଲୋନୀ
୩. ମନ ଉପତ୍ୟକାର ଉପାଖ୍ୟାନ
୪. ଅଧିକରୁ କିଛି ଊର୍ଦ୍ଧ୍ୱ
୫. ପୀଡ଼ାର ପରିଭାଷା
୬. ମା, ମାୟା ଓ ମମତା (ଯନ୍ତ୍ରସ୍ଥ)
୭. ମୋ ଲେଖା ଅଶ୍ରୁର କାଳିରେ (ଯନ୍ତ୍ରସ୍ଥ)
୮. ଗଙ୍ଗା (ଅସମ୍ପୂର୍ଣ୍ଣ)

ରେଡ଼ିଓ ଏବଂ ଦୂରଦର୍ଶନର ସ୍ୱୀକୃତିପ୍ରାପ୍ତ ଗୀତିକାର ଏବଂ ନାଟ୍ୟକାର ।
ପଚିଶରୁ ଊର୍ଦ୍ଧ୍ୱ ନାଟକ ଏବଂ ଅନେକ ଗୀତିକବିତା ପ୍ରଚାରିତ ।

**ପୁରସ୍କାର ଏବଂ ସମ୍ମାନ**

୧. ଯଦୁମଣି ସାହିତ୍ୟ ସଂସଦ
୨. ନୀଳଶୈଳ
୩. ଧରିତ୍ରୀ
୪. ଚଲାପଥ
୫. ଗୋକର୍ଣ୍ଣିକା
୬. ଚିନ୍ତା ଓ ଚେତନା (ବାଙ୍କୀ)
୭. ପରିଚୟ (ଆଠଗଡ଼)
୮. ସୁଧନ୍ୟା

## ସ୍ୱର୍ଗତା ସୁଧାଂଶୁବାଳା ପଣ୍ଡାଙ୍କ ଅକାଳ ବିୟୋଗରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଶ୍ରଦ୍ଧାଞ୍ଜଳି

ଓଡ଼ିଶାର ସ୍ୱନାମଧନ୍ୟା ଗାଳ୍ପିକା ତଥା ଔପନ୍ୟାସିକା ସୁଧାଂଶୁବାଳା ପଣ୍ଡାଙ୍କର ଅକାଳ ବିୟୋଗରେ ଆମେ ବିଶେଷ ମର୍ମାହତ । ତାଙ୍କର ସୃଜନଶୀଳ ଓ ମନନଶୀଳ ସାରସ୍ୱତ ଅବଦାନରେ ଓଡ଼ିଆ ସାହିତ୍ୟ ଆଜି ପରିପୁଷ୍ଟ ଓ ପୁଷ୍କଳ । ବିଦଗ୍ଧ ପାଠକମହଲରେ ତାଙ୍କର ସୃଷ୍ଟି-ସମ୍ଭାରର ଲୋକପ୍ରିୟତା ତାଙ୍କୁ ଅମରତ୍ୱ ପ୍ରଦାନ କରିବ, ଏଥିରେ ସନ୍ଦେହ ନାହିଁ ।

ସେହି ଅମର ଆତ୍ମାର ସଦ୍‌ଗତି କାମନା କରିବା ସଙ୍ଗେ ସଙ୍ଗେ ଏହି ଦୁଃଖଦ ମୁହୂର୍ତ୍ତରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ତାଙ୍କର ଶୋକସନ୍ତପ୍ତ ଆତ୍ମୀୟ-ସ୍ୱଜନଙ୍କୁ ମୁଁ ଗଭୀର ସମବେଦନା ଜ୍ଞାପନ କରୁଛି ।

ରାଜକିଶୋର ମିଶ୍ର
ସମ୍ପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

# Orissa Lekhika Samsad

**Nayapalli, Bhubaneswar.**

# ଶୋକବାର୍ତ୍ତା

ଗତ ୧.୭.୯୫ ତାରିଖ ସନ୍ଧ୍ୟା ଘ ୭-୩୦ ମିନିଟ୍ ସମୟରେ ଓଡ଼ିଶାର ସୁଲେଖିକା ତଥା ବିଶିଷ୍ଟ ସାହିତ୍ୟିକା ଶ୍ରୀମତୀ ସୁଧାଂଶୁବାଳା ପଣ୍ଡାଙ୍କର ପରଲୋକ ହୋଇଯାଇଅଛି । ଏହାଦ୍ୱାରା ଓଡ଼ିଆ ସାହିତ୍ୟଜଗତର ଏକ ଉଜ୍ଜ୍ୱଳ ପ୍ରତିଭା ଚିରକାଳ ପାଇଁ ନିଶ୍ଚିହ୍ନ ହୋଇଗଲା । ତାଙ୍କ ମୃତ୍ୟୁରେ ଶୋକସନ୍ତପ୍ତ ପରିବାର ପ୍ରତି 'ଓଡ଼ିଶା ଲେଖିକା ସଂସଦ' ତାହାର ଗଭୀର ସମବେଦନା ଜ୍ଞାପନ କରୁଅଛି ।

ଶ୍ରୀମତୀ ବୀଣାପାଣି ମହାନ୍ତି
ସଭାପତି

# କଲ୍ୟାଣୀୟାସୁ

ଦୁର୍ଭାଗା ଲେଖନୀ ମୋ'ର
    ତୋ' ପାଇଁ ଲେଖିବ କବିତା ।
ହତଭାଗ୍ୟ ଲେଖକ ମୁଁ,
    —ଲେଖୁଛି ମୁଁ ତୋର ଜ୍ୟେଷ୍ଠଭ୍ରାତା ॥
'ଝିଅ' ଛଡ଼ା ଦିନେ ହେଲେ
    ନାଆଁ ଧରି ଡାକି ନାହିଁ ତୋ'ର ।
ମୋ ଠାରୁ ସାତ ସାନ
    ହୋଇଗଲୁ ଆଜି ସାତ ପର ॥
ରହିବାକୁ ହେବ ମୋତେ
    ପୂର୍ବ ଜନ୍ମ କର୍ମ ଅନୁଯାୟୀ ।
ଦେଖିଲି ତୋ' ବ୍ରହ୍ମଲୀନ ରୂପ
    କି ଆନନ୍ଦେ ପଡ଼ିଥିଲୁ ଶୋଇ ॥
ଭାଇନା ହେ ଶୋଇପାରୁ ନାହିଁ
    ଭୋକେ ଜଳେ ମୋର ଜଠର ।
ଖାଇପାରୁ ନାହିଁ କିଛି
    କାହିଁକି ଏ ଅବସ୍ଥା ମୋହର ?
କାହା ମନେ କଷ୍ଟ ଦେଇ ନାହିଁ
    ହସି ହସି ପରକୁ ଆପଣା—
କରିଥିଲି; ତଥାପି ଏ ଦୁଃଖ
    ତଥାପି ଏ ମୃତ୍ୟୁର ଯନ୍ତ୍ରଣା—
କାହିଁକି କରୁଛି ଭୋଗ ?
    ଶାସ୍ତ୍ର ତୁମ କି କହେ, କୁହ ହେ ।

—ଯିବା କଥା ଯଦି ସତ୍ୟ,
ଅନାୟାସେ କିଆଁ ଯିବିନି ହେ ?
ସେ ଯନ୍ତ୍ରଣା ବୁଝାଇ ପାରୁନି
ଏତେ ବହି ଲେଖିଲି ସିନା ମୁଁ ।
କଲମ ମୋ' ସ୍ତବ୍ଧ ଆଜି, ମସୀହୀନ
ବ୍ୟାଧି ହେଲା ଦିନୁ ।।
ଚାଲିଯିବି; ରହିବିନି;
ରହିବାକୁ ଆଉ ଇଚ୍ଛା ନାହିଁ ।
ଖାଲି ମୋତେ ଅବିଳମ୍ବେ ବିନା କଷ୍ଟେ
ତାଙ୍କ ପାଖେ ଚାଲିଯିବା ପାଇଁ—
କିଛି କର ଭାଇନା ମ !
ଜାଣେ ତୁମେ ସର୍ବଶକ୍ତିମାନ ।
ଏତିକି କରିବ ନାହିଁ ?
କରିବନି ମୋ' କଷ୍ଟ ହରଣ ?

କି କହିବି ବାୟାଣୀକୁ
ଚିରକାଳ ପାଗଳୀ ମୋ "ମାଗି" ।
ପାଇଥିଲା ବୋଉ ତାକୁ
ସବୁ ଦିଅଁ ଦେବତାଙ୍କୁ ମାଗି ।।
କବିତାର ପ୍ରଥମ ଇସାରା
'କୁହୁ' 'କୁହୁ' କଲା ଯେତେବେଳେ
କହିଲା, ମୋ'ପାଇଁ ଗୋଟେ
ଗୀତ ବା କାହାଣୀ
ମୋ ନାଆଁରେ ତୁମେ ଲେଖିଦେଲ—
ପ୍ରଜାତନ୍ତ୍ର ମୀନାବଜାରରେ
ଛାପି ତାକୁ, ତଳେ ଛାପି ମୋର ନାଆଁକୁ
ପଢୁଥା'ନ୍ତି, ଚାହୁଁଥାନ୍ତି,
ଚମକୃତ କରି ଦୁନିଆଁକୁ ।।

ହସିଲି ମୁଁ, ବାୟାଣୀଲୋ, ତୋ' କବିତା
ତୁ ସିନା ଲେଖିବୁ ।
ମୋ' କବିତା ତଳେ ତୋ'ର
ନାଆଁ ପୁଣି କେମିତି ଛାପିବୁ ?

ଚୁପ୍ ଚାପ୍ ବସିଯାଅ
କବାଟଟା ଦେଇଦେ' ଭିତରୁ ।
ଯିଏ ତାକୁ ଶୁଣିବୁନି
ଖୋଲିବୁନି ଦୁଆର ଜମାରୁ ।।

କବିତା ଲେଖିବୁ ଖାଲି,
କବିତାରେ ମଜ୍ଜିଯିବୁ ଝିଅ ।
ସେ ଯେଉଁ କବିତା ହେବ
ସେହି ତୋ'ର ନିଜ ପରିଚୟ ।।

ବୁଝିଗଲା ପାଗଳୀଟା
ଲେଖିଗଲା ଗଳ୍ପ ଓ କବିତା ।
ନାଟକ ଲେଖିଲା କେତେ,
ମୁଗ୍ଧ ହେଲେ ପାଠକ ଓ ଶ୍ରୋତା ।।

ରାଶି ରାଶି ଚିଠି ଆସେ;
ଫୋନ୍ ଆସେ ତାହାଠାରୁ ବେଶୀ
ମୁଁ କେବଳ ହସିଦିଏ;
ବାୟାଣୀକୁ ନିଶା ତ ଘାରିଛି !!

ନିଶାସକ୍ତ ହୃଦ ତା'ର
ମିଶିଗଲା "ସତ୍ୟବାଦୀ" ହୃଦେ ।
ସତାବନ ମସିହାରେ
ଓ.ଏମ୍.ପି.ର ସେ ଅଭେଦ୍ୟ ଦୁର୍ଗେ ।।

କେତେ କାନ୍ଦିଥିଲା ଯେବେ
ନିଜେ ଗାଡ଼ି ଚଳାଇ ବାଙ୍କୀକୁ
ଛାଡ଼ିଦେଲି ତାକୁ ତା'ର
ଶାଶୁ ଘରେ; କହିଲା ଶେଷକୁ—

ମୋତେ ଛାଡ଼ି ଏ ନୂଆ ଜାଗାରେ
ଭାଇନା ହେ ଚାଲିଯାଅ ନାହିଁ
ଭାରି ଡର ଲାଗୁଛି ହେ,
ଆମ ଘରେ ଜାଗା ନାହିଁ
ମୁଁ ରହିବା ପାଇଁ ??

କି ଉତ୍ତର ଦେଇଥାନ୍ତି ?
କାହା ଘର ? କିଏ ବା କାହାର ?
ସବୁ ମାୟା, ମରୀଚିକା
ଦୁସ୍ତର ଏ ପ୍ରପଞ୍ଚ ସଂସାର ।
ଭୟ କଲେ ସବୁଠାରେ ଭୟ,
ନିଜ ଘରେ ଅନ୍ୟର ନିବାସେ ।
ଭୟ ନାହିଁ କେଉଁଠି ଲୋ ମାଆ
ବଳୟ ଯେ ଆମ ଚଉପାଶେ ॥
ନାହିଁ କେହି ଶକ୍ତିଶାଳୀ
ସେ ବଳୟ ଭେଦିଯିବ ପଶି ।
ନବଖଣ୍ଡ ହେବ ଶିର
ସୁଦର୍ଶନ ତାହାର ତ ସାକ୍ଷୀ ॥

ସେ ଘର ନିଜର ହେଲା
''ବେବୀ'', ''ନନ୍ଦୁ'', ''ରୋଜି'' ପହୁଞ୍ଚିଲେ ।
ସ୍ୱର୍ଣ୍ଣ ଭିକ୍ଷୁ ମନ କହୁଥିଲା,
ଭାଇନା ମ, ପୁଅଟିଏ ହେଲେ—
କେତେ ସୁଖ ଲାଗନ୍ତା କୁହତ—
ଆସିଗଲା, ''ବାପି'' ତା' କୋଳକୁ ।
ନିଜେ ବେଶୀ ପଢ଼ିନି ମୁଁ;
ପଢ଼େଇବି ନିଶ୍ଚେ ସମସ୍ତଙ୍କୁ ॥
ସମସ୍ତେ ପଢ଼ିଲେ ପାଠ,
ବଳିଗଲେ ଏକ ଅପରକୁ ॥।

ନିଜ ଘର କରିବାକୁ
ଉଡ଼ିଗଲେ ଯେ ଯାହାର ସୁଖେ ।
ନୟାପଲ୍ଲୀ "ସତ୍ୟସୁଧା"
ପ୍ରାସାଦରେ ଏକା ମନ ଦୁଃଖେ
ରହିଲା ମୋ' ମାଗି ଆହା
ରାନ୍ଧିଲାନି, ଖାଇଲାନି ବେଳ ଅନୁଯାୟୀ ।
ସତ୍ୟ ବିନା ସୁଧା ଆଉ
ରହିଲାନି ଦିବ୍ୟ ସୁଧା ହୋଇ ॥

ନିରନ୍ତର ଖୋଜୁଥିଲା
ସତ୍ୟ କାହିଁ ?
ସ୍ୱର୍ଗ ମୋ'ର ପାଲଟିଛି ମର୍ତ୍ତ୍ୟ ।
ଏତେ ହିଂସା, ଏତେ ବାଦ,
ଏତେ ଘୃଣା ଦେଖି ନ ଥିଲି ତ ।
ମୁହ୍ୟମାନ ଅନ୍ତର ତା'
କ୍ରୋଧେ, ଦୁଃଖେ ଉଦ୍‌ବେଳିତ ସଦା,
କାହିଁକି ଏ ପାତର ଅନ୍ତର
ଫାଟୁ ନାହିଁ କାହିଁକି ବସୁଧା ?
ଦ୍ରୌପଦୀ ତ ପଡ଼ିଗଲେ
ସମସ୍ତଙ୍କ ଆଗରୁ, କିଆଁ ନା
ଅର୍ଜୁନଙ୍କୁ ବେଶୀ ଭଲ ପାଉଥିଲେ
ତୁମେ ନିଜେ କହୁଥିଲ କି ନା !!
ଏତେ ପକ୍ଷପାତ ତେବେ
ସଂସ୍କୃତିର ଶୁଦ୍ଧ ପରିବେଶେ
କିଆଁ ଚାଲେ ମୋତେ କୁହ—
ନେତ୍ର ଫାଟି ନୀର ବହି ଆସେ ॥
କହିଲି ମା, କର୍ମ କଲୁ ଭଲ ହେଲା
ଏତେ ବହି ଲେଖିଲୁ ତୁ ମା,
ଫଳ ପାଇଁ ଆଶା କରି
ଭୋଗୁଅଛୁ ଅଶେଷ ଯନ୍ତ୍ରଣା ॥

ମନକୁ ବୁଝାଇ ଦେ'
   ପୂର୍ବ ଜନ୍ମ କର୍ମ ଅନୁସାରେ
ଏ ଜଗତେ ଫଳ ମିଳେ
   ତାହା ପୁଣି କର୍ତ୍ତାଙ୍କ ଆଜ୍ଞାରେ ॥
ବୁଝିଲାନି ପାଗଳୀ ଏଥର
   ମୁହଁ ଭାରି କରି ସେ ରହିଲା ।
ଚିର ହସ ହସ ମୁଖେ
   ଘନ କୃଷ୍ଣ ବାରିଦ ଚରିଲା ॥
'ମନ' ହେଲା ମହା ଖୁସି;
   'କର୍କଟ'କୁ କହିଲାରେ ଶୁଣ
ଏ ମୁହୂର୍ତ୍ତେ ଶରୀରେ ପ୍ରବେଶି
   ଧ୍ୱଂସ କର ଦେହ ସନ୍ତୁଳନ ॥
ଆଉ ବର୍ତ୍ତି ପାରିଲାନି,
   ଦୁରାରୋଗ୍ୟ ହେଲା ମହାବ୍ୟାଧି ।
ହାସ୍ୟମୟୀ, ଲାସ୍ୟମୟୀ
   ପାରିଲାନି ଚକ୍ରବ୍ୟୂହ ଭେଦି ॥
ଅଭିମନ୍ୟୁ ପରି ଆହା,
   ଟଳିପଡ଼ି କୁରୁକ୍ଷେତ୍ର ରଣେ ।
ନିଃସହାୟ ଅନାଇ ରହିଲା
   ଢଳଢଳ ଚାହିଁ ଏଣେ ତେଣେ ॥

ହାୟ ଯଦି ସମର୍ଥ ମୁଁ
   ହୋଇଥାନ୍ତି ପୃଥାପୁତ୍ର ପରି ।
ହାୟ ଯଦି ସଖା ମୋର
   ହୋଇଥା'ନ୍ତେ ଶ୍ରୀକୃଷ୍ଣ ମୁରାରୀ ॥
ସୂର୍ଯ୍ୟାସ୍ତ ପୂର୍ବରୁ ନିଶ୍ଚେ
   ମରିଥା'ନ୍ତା ଭୀରୁ ଜୟଦ୍ରଥ ।
ବିଜୟର ବାନା ବହି
   ଚଳିଥା'ନ୍ତା ନ୍ୟାୟ ଦିବ୍ୟ ରଥ ॥

ପ୍ରତିହିଂସା ମୋ'ର ନୁହେଁ;
   ପ୍ରଭୁଙ୍କର ଅମୋଘ କୃପାଣ ।
ମୁଁ କେବଳ ଦୀନ ନରଟିଏ;
   ପାପ ପଙ୍କେ କ୍ଳିନ୍ନ ମୋ'ର ମନ ॥

ତଥାପି ଲୋ ମାଆ ମୋ'ର
   ତୋ ସାଧନା ଅନ୍ତ ନୁହେଁ ମୃତ୍ୟୁ ।
ତୁ ପୁଣି ଜନ୍ମିବୁ ଏଠି;
   ଆରମ୍ଭିବୁ ସାଧନା ସେଇଠୁ ॥

ସବୁ ବାଞ୍ଛା ପୂର୍ଣ୍ଣ ହୁଏ;
   ବିଶ୍ୱକର୍ତ୍ତା କହିଛନ୍ତି ନିଜେ ।
ଚାହିଁ ରହିଛି ତା' ଆଖି;
   ମୁଦିଦିଅ, ଶୋଇଯାଉ ନିଦେ ॥

ଶାନ୍ତି ପାଉ, ସୁଖ ପାଉ,
   ସତ୍-ଚିତ୍-ଆନନ୍ଦ ସେ ପାଉ ।
ରଥେ ସେ ତ ବସିଥିଲେ
   ଯେବେ ଗଲା ତା'ର ପ୍ରାଣବାୟୁ ।
ସବୁ ସଁପିଦେଇ ସେହି
   ଚକାଡୋଳା ନିଷ୍ପଦ ପୟରେ ।
ରହୁଛି ଲୋ ବାଈଆଣୀ
   କ୍ଷମା କର ଅଜ୍ଞ ମାନବରେ ॥

**ବଡ଼ ଭାଇନା**
ଦୁର୍ଗାମାଧବ ମିଶ୍ର
''ଚନ୍ଦ୍ରାଲୋକ''
ପ୍ଲଟ୍ ନଂ. ଡି ୯, ବି.ଜେ.ବି. ନଗର
ଭୁବନେଶ୍ୱର - ୭୫୧ ୦୧୪

# ସମ୍ପୂଦୁଣୀ ଚାଲିଗଲେ

ସମୁଦୁଣୀ ଆଉ ନାହାନ୍ତି, ଏକଥା ଭାବିଲେ ଏବେବି ବିଶ୍ୱାସ କରି ହେଉନି । ଶ୍ରୀମତୀ ପଣ୍ଡା କେବଳ ମୋର ସମୁଦୁଣୀ ନ ଥିଲେ, ଲେଖିକା ଓ ପ୍ରକାଶକ ଭାବେ ବହୁ ପୂର୍ବରୁ ତାଙ୍କ ସହିତ ମୋର ପରିଚୟ । ୧୯୮୪ ମସିହାରେ ପ୍ରଥମେ ମୁଁ ତାଙ୍କର ଗପବହି 'କଣ୍ଟିତ୍ କାନ୍ତା' ଓ ପରେ ୧୯୮୯ରେ 'ସଲୋନୀ' ନାମକ ଉପନ୍ୟାସ ପ୍ରକାଶ କରିଥିଲି । ୧୯୯୨ ମସିହାରେ ମୋ ଝିଅ ତାଙ୍କର ବୋହୂ ହେବାପରେ ଏହି ସମ୍ବନ୍ଧ ଆହୁରି ନିବିଡ଼ ଓ ଘନିଷ୍ଠ ହୋଇଉଠିଲା ।

ପାରିବାରିକ ଗତାନୁଗତିକ କାର୍ଯ୍ୟ ଛଡ଼ା ସେ ଅଧିକାଂଶ ସମୟ କଟାଉଥିଲେ ପଢ଼ିବାରେ, ଲେଖିବାରେ ବା ସାହିତ୍ୟ ସଂପର୍କୀୟ ଆଲୋଚନାରେ । ତାଙ୍କର ଏ ଯାବତ୍ ଗଳ୍ପ, ଉପନ୍ୟାସ, ନାଟକ ଓ କବିତା ପ୍ରଭୃତି ମିଶି ୧୨ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି । ଏହି ପୀଡ଼ିତାବସ୍ଥାରେ ମଧ୍ୟ ତାଙ୍କର ୨/୩ଟି ବହିର ଛାପାକାର୍ଯ୍ୟ କଟକ ଓ ଭୁବନେଶ୍ୱରର କେତେକ ପ୍ରକାଶକଙ୍କ ନିକଟରେ ଚାଲିଛି । ଏହାଛଡ଼ା ଦିଲ୍ଲୀର ଜଣେ ପ୍ରକାଶକଙ୍କ ନିକଟରେ "The Moon and I" ନାମକ ତାଙ୍କର ଗୋଟିଏ ଇଂରାଜୀ ଗପବହି କାର୍ଯ୍ୟ ଚାଲିଛି । ଏଥିରେ ତାଙ୍କର କେତୋଟି ଭଲ ଭଲ ଗପର ଇଂରାଜୀ ଅନୁବାଦ ରହିଛି ।

ତାଙ୍କ ଶେଷାବସ୍ଥାରେ ପ୍ରକାଶ ପାଇଥିବା ଗପବହି "ପ୍ରାଣ ଓ ପ୍ରଣୟ" ଶ୍ରୀଗୁଣ୍ଡିଚା ପୂର୍ବଦିନ ତାଙ୍କୁ ଦେବାକୁ ଯିବାବେଳେ ସେ ଅତ୍ୟନ୍ତ ଦୁର୍ବଳ ଓ ଶଯ୍ୟାଶାୟୀ ଥିଲେ । ତଥାପି ମୋତେ ଦେଖି ଅତ୍ୟନ୍ତ ଆଦର ସହକାରେ ନିକଟରେ ବସାଇଲେ ଓ ନୂଆ ବହିଟିକୁ ଦେଖି ଖୁବ୍ ଖୁସି ହୋଇଗଲେ । ସେହି ରୁଗ୍ଣ ଓ ଦୁର୍ବଳ ଅବସ୍ଥାରେ କଷ୍ଟେମଷ୍ଟେ ଉଠିଲେ ଓ ଆଖିରେ

ଚଷମା ଲଗାଇ ବହିଟି ଧରି ପୃଷ୍ଠା ପରେ ପୃଷ୍ଠା ଓଲଟାଇଗଲେ । ତାଙ୍କର ଏହି ନୂତନ ସୃଷ୍ଟିଟିକୁ ଦେଖି ତାଙ୍କର କି ଅପୂର୍ବ ଆନନ୍ଦ ! କେତେ କଣ କହିବାକୁ ଚେଷ୍ଟା କରୁଥାଆନ୍ତି, ସବୁ ସ୍ପଷ୍ଟ ହେଉ ନ ଥାଏ, ତଥାପି କଥା ପ୍ରସଙ୍ଗରେ ଅତି କ୍ଷୀଣ ସ୍ୱରରେ କହିଲେ– ଦେହ ତ ଆଉ ଭଲ ହେବାର ନାହିଁ, ଦେହରେ ଯଦି ଟିକିଏ ଶକ୍ତି ଆସନ୍ତା, ମୁଁ ଅଧା କରିଥିବା ଉପନ୍ୟାସଟିକୁ ସମ୍ପୂର୍ଣ୍ଣ କରିଦିଅନ୍ତି ।

ମାତ୍ର ସତକୁ ସତ, ସବୁଦିନ ପାଇଁ ତାହା ଅସମ୍ପୂର୍ଣ୍ଣ ରହିଗଲା । କାଳର ଅପ୍ରତିହତ ସ୍ରୋତରେ ସେ ଭାସିଗଲେ କେଉଁ ଅଜଣା ରାଇଜକୁ ଶ୍ରୀଗୁଣ୍ଡିଚା ପରଦିନ । ତା ସହିତ ଭାସିଗଲା ତାଙ୍କ ଆଖିର ସ୍ୱପ୍ନ ଓ ହୃଦୟର ଭାବ । ଅସମ୍ପୂର୍ଣ୍ଣ ରହିଗଲା ତାଙ୍କର କେତେ କେତେ ମଧୁମୟ କଳ୍ପନା-ଜଳ୍ପନା ଓ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାର ସମ୍ଭାବନା ।

**ପୀତାମ୍ବର ମିଶ୍ର**
ବିଦ୍ୟାପୁରୀ
ବାଲୁବଜାର, କଟକ

# — ସୁଧା ମାଁ —

ସୁଧା ମାଁ ! ଉଠ ! ଆଖି ଖୋଲ । ଏମିତି ନିସ୍ତେଜ ହୋଇ ଶୋଇପଡ଼ୁଛ କାହିଁକି ? ଦେଖିଲ ବାପୀ, ନନ୍ଦୁ, ରୀନା କେମିତି ଆକୁଳ ବିକଳ ହୋଇପଡ଼ୁଛନ୍ତି ! ବେବୀଙ୍କୁ ଖବର ଦିଆ ସରିଗଲାଣି । ସେ ମଧ୍ୟ ଆସି ପହଞ୍ଚିଯିବେ ଆଉ ଘଡ଼ିକରେ । ଭାଇନାମାନଙ୍କୁ ଦେଖ ! ତାଙ୍କୁ ଏ ଦୁଃଖ ଦେଇ ତୁମେ କାହିଁକି ସବୁଦିନ ପାଇଁ ଚାଲିଗଲ ? ରୁଷିଗଲ ଦୁନିଆ ଉପରେ । ଦେହଟା ତୁମକୁ ଅନେକ ଯନ୍ତ୍ରଣା ଦେଲା ? ଆଉ ସହିପାରିଲନି ! ଝିଅ ହୋଇ ଜନ୍ମ ହେବାଦିନୁ ଅନେକ ଦୁଃଖ ଯନ୍ତ୍ରଣା ଦେଇ ତ ଗତି କରିଥିଲ ! ଚାରୋଟି ପିଲାଙ୍କୁ ଦଶମାସ ଗର୍ଭରେ ଧରି ଅନେକ କଷ୍ଟ ଅନୁଭବ କରିଥିଲ । କିନ୍ତୁ ସେଥିରେ ଥିଲା ସୁପ୍ତ ଏକ ଆଶାର ଆଲୋକ । ତେଣୁ ସେ ସବୁ ହସି ହସି ସହିନେଇ ପାରୁଥିଲ । ମଜା ମଜା କଥା କହି, ସମସ୍ତଙ୍କୁ କ୍ୟାରିକେଚର କରି କି ସୁନ୍ଦର ଫୁଟେଇ ପାରୁଥିଲ ତୁମ ମୁହଁରେ ସେ ଭାଷାଗୁଡ଼ିକ ! ଏଇକ୍ଷଣି ମନେ ହେଉଛି... ତୁମେ ପୁଣି ଉଠିପଡ଼ିବ, ଆଉ ପୂର୍ବଭଳି କିଏ କି ପ୍ରକାର ମୁହଁ କରି କ'ଣ ସବୁ କହୁଥିଲା ତାକୁଇ ବଖାଣି ନିଜେ ହସି ସମସ୍ତିଙ୍କୁ ହସେଇ ଘରଟାକୁ ପୁନର୍ଜୀବନ ଦେଇଦେବ । ଆହା ! ତୁମର ସେ ଖାତା କଲମ ସବୁ ? ତୁମର ଲେଖା ପ୍ରକାଶିତ ଓ ଅପ୍ରକାଶିତ ସମସ୍ତ ପୁଷ୍ପଗୁଚ୍ଛ ? କିଏ ତାକୁ ଗୋଟେଇ ପୁଣି ଗଜରାମାଳ ଗୁନ୍ଥିପାରିବ କହିଲ ?

କିଏ ଆସି ମାଗୁଥିଲା ବୁଢ଼ା ବ୍ରାହ୍ମଣ ବେଶରେ ? 'ତୁଳସୀମାଳ ଦେ' ! 'ତୁଳସୀମାଳ ଦଉନୁ' ? ତୁଳସୀମାଳ ଗୁନ୍ଥା ହେଲା । ଜଗନ୍ନାଥଙ୍କୁ ତ ଜ୍ୱର ହୋଇ ଅନ୍ଧାର ଘରେ ଶୋଇଛନ୍ତି । ସେ ମାଳ ତୁମରି ଜଗନ୍ନାଥ ଫଟୋକୁ ପିନ୍ଧାଇ ଦିଆଗଲା । ତୁମେ ଖୁସି ହେଲ । ଶାନ୍ତିରେ ଘଡ଼ିଏ ଶୋଇପଡ଼ିଲ । ଗୀତା ଜ୍ଞାନେଶ୍ୱରୀର ପୋକ ତୁମେ ! ତୁମକୁ ମୁଁ କ'ଣ କହିବି ? କେମିତି କହିବି, ଦଶ ବାରବର୍ଷର ଝିଅଟିଏ ବଡ଼ ବଡ଼ ଗାଢ଼ କଳା ଆଖି ଓ ଟଣା ଟଣା ଭୂଲତା ନେଇ ମୋତେ ପ୍ରଥମେ 'ଭାଉଜ' ବୋଲି ଯେଉଁ ସୁଧାମୟୀ କଣ୍ଠରେ ଡାକିଥିଲ, ସେ ଚିର ସ୍ମରଣୀୟ । ସେଇ ଝିଅଟି ପାଇଁ ମୁଁ ମେସିନ୍‌ରେ ଫ୍ରକ୍ ସିଲେଇ କରିଥିଲି । ତା' ପରେ ବ୍ଲାଉଜ୍ ଆଉ ଶାୟା । ତାକୁଇ

ପୁଣି ମୁଁ ଚନ୍ଦନଟିପା ଲଗାଇ ବେଦୀ ଉପରକୁ ପଠାଇଥିଲି । ତା'ରି ମୁଁ ଦେଖିଥିଲି ପ୍ରଥମ ମାତୃତ୍ୱ ରୂପ । ତାପରେ ଲେଖିକା ହିସାବରେ । ପୁଣି ସଭାରେ ବକ୍ତା ହିସାବରେ । ଲେଖିକା ସଂସଦ ଗଢ଼ିଥିଲ । ମୋତେ ମେମ୍ବର କରାଇଥିଲ । କିନ୍ତୁ ସେ ସୌଭାଗ୍ୟ ମୋର ନ ଥିଲା ଯାଇ ଥରେ ସେଇ ସଭାରେ ଯୋଗ ଦେବାପାଇଁ । ପୁଣି ବାର୍ଷିକ ଉତ୍ସବ ଖୁବ୍ ସମାରୋହରେ ହେଲା । ସେଥିରେ ମଧ୍ୟ ଯୋଗ ଦେଇ ନାହିଁ । କେବଳ ପୁରୀରେ ଥରୁଟିଏ ଯୋଗ ଦେଇଥିଲି । ସେତେବେଳକୁ ଏ ଦୁଃସାଧ୍ୟ ବ୍ୟାଧି ତୁମକୁ ଗ୍ରାସ କରିସାରିଲାଣି, କିନ୍ତୁ ବାହାରକୁ ଜଣାପଡ଼ିନି । କେବଳ ଦୁର୍ବଳତା ! ଦୁର୍ବଳତା ତ ତୁମକୁ ସେଇଦିନୁ ଗ୍ରାସ କଲାଣି, ଯେଉଁଦିନ ତୁମେ ବିକଳ ହୋଇ କାନ୍ଦିଥିଲ 'ଭାଉଜ ! ମତେ କହ ନାହିଁ ତାଙ୍କର ବ୍ଲଡ୍ କ୍ୟାନ୍ସର ହୋଇଛି ବୋଲି ।' ଦିଲ୍ଲୀରେ ଜଣାପଡ଼ିଥିଲେ ମଧ୍ୟ କହି ନ ଥିଲି । ବାଟସାରା ଦୁହେଁ ଏକାଠି ଗଲେ । ଅନବରତ ତମ ହସ ହସ ମୁହଁଟିକୁ ଅନେଇ ମୁଁ ଭାବିଛି 'ଆହା ! ଏ ଦୁଃଖ ତୁମକୁ କିଏ ଦେଲା ?' ବମ୍ବେରେ ଆମେରିକାରୁ ଔଷଧ ମଗାଇବା ନିମନ୍ତେ ଫୋନ୍ କରିବାକୁ ଡି.ଆଇ.ଜି. ବାଲିଙ୍କ ଘରକୁ ଯାଇଥିଲୁ । ତୁମକୁ ସେତେବେଳେ ଏକୁଟିଆ ମୁହୂର୍ତ୍ତେ ଛାଡ଼ିଦେବାକୁ ମୋ ମନ ଡାକୁ ନ ଥିଲା । ଆମର ସହିତ ତାଙ୍କ ଘରକୁ ଗଲ । ରୋଜୀଙ୍କୁ ଫୋନ୍ ହେଲା । ଶୁଣି ପଚାରିଲ "କ'ଣ ପାଇଁ ଆମେରିକାରୁ ଔଷଧ ଆସିବ ?" ଆଉ ତା' ପରେ ମୁଁ କହିଥିଲି ଯାହା ଘଟିଛି ବା ଘଟିବାକୁ ଯାଉଛି । ସେଇଠି ଚଟାଣ ଉପରେ ଦୁମ୍ କରି ପଡ଼ିଯାଇ ତୁମେ କାନ୍ଦି କାନ୍ଦି ଗଡ଼ିଯାଉଥିଲ ଆଉ ଆସୁଥିଲ । ତୁମକୁ କିଛି କହି ବୁଝେଇବାର ଭାଷା ମୋ ପାଖେ ସେତେବେଳେ ନ ଥିଲା । କେବେ ମଧ୍ୟ ନାହିଁ । କାରଣ ଯାହାର ଯାହା ଘଟେ ସେ ନିଜେଇ ତାକୁ ଜାଣେ । ଅନ୍ୟ ଯିଏ କିଛି କହି ଭୁଲାଏ, ସେଥିରେ ମୂଲ୍ୟ କିଛି ନ ଥାଏ ।

ଜୀବନର ମୂଲ୍ୟ କ'ଣ ? ଲକ୍ଷ୍ୟ କ'ଣ ? ଖାଲି "ଖାଇବା...ପିଇବା...ପିନ୍ଧିବା...ଶୋଇବା... ?" ତୁମକୁ କିଛିଟା ଭୁଲେଇବା ନିମନ୍ତେ ଆମେ ଦିଲ୍ଲୀରେ ଯୋଗକ୍ଲାସ୍ ନେଲେ । ତିନିମାସ ଅନେକ ପରାମର୍ଶ...ବହିପଢ଼ା...ଆଲୋଚନା । ମୁଁ ଜାଣେନି ମୋର ସ୍ୱଳ୍ପ ବୁଦ୍ଧିରେ ଯାହା କହିଥିଲି, ସେ ସବୁ ତୁମ ମନକୁ କେତେଦୂର ଛୁଇଁଥିଲା । ପ୍ରକୃତରେ କିଛି ଭୁଲେଇବା ପାଇଁ ନୁହେଁ...ଅନ୍ତତଃ ଆଗକୁ ଏ ପୃଥିବୀର ପ୍ରକୃତ ଯୁଦ୍ଧକ୍ଷେତ୍ରକୁ ଓହ୍ଲେଇବା ପୂର୍ବରୁ କିଛିଟା ପରାମର୍ଶ । ତୁମେ ତାକୁ ଗ୍ରହଣ କରିଥିଲ ।

ଅନେକ ରାତି ଆମେ ଏକାଠି ଶୋଇ କାନ୍ଦିଛେ । ପୁଣି ତୁମେ ସେ ଅନ୍ଧକୂପରୁ ନିଜକୁ ଉଠାଇବା ପାଇଁ ଚେଷ୍ଟା କରି ବହିଖାତା ଧରି ଆଗେଇ ଯାଇଛ । ମୁଁ ସବୁ ଦେଖୁଥିଲି ଆନ୍ତରିକତାର ସହିତ ।

ତୁମର ସମସ୍ତ କାର୍ଯ୍ୟ ସୌନ୍ଦର୍ଯ୍ୟ ପରିପୂର୍ଣ୍ଣ । ପରିବା କଟାଠାରୁ ରୋଷେଇ ପର୍ଯ୍ୟନ୍ତ । ତୁମର ହାତ ତିଆରି ଦୋଷା, ଦହିବରା, ଆଳୁଚପ୍, ବାଇଗଣୀଠାରୁ ଆରମ୍ଭ କରି କଲରା ଭଜା ପର୍ଯ୍ୟନ୍ତ ସବୁ ଏକ ମଧୁର ଆସ୍ୱାଦର ପରିବେଶ ! ସୁନୁ, ଝୁନୁ ଓ ରୁନୁଙ୍କୁ ତମେ କେତେଥର ଖୁଆଇଛ ? ଆମେରିକାରେ ରୁନୁ ଘରେ ଯାଇ ରହି କି ଆନନ୍ଦ ପାଇଛ ? ସେ ଅବର୍ଣ୍ଣନୀୟ ଆନନ୍ଦର ସ୍ୱାଦୁ ତୁମଠାରୁ ମୁଁ ଟିକିଏ ପାଇଛି । କ'ଣ ମୁଁ ଲେଖିପାରିବି ତୁମ ପାଇଁ ? ତୁମେ ମତେ କେତେ ଭଲପାଉଥିଲ... ସମ୍ମାନ ଦେଉଥିଲ, ତାକୁ ମୁଁ ନିଜେ ଉପଲବ୍ଧି କରେ । ତୁମେ ମଧ୍ୟ ନିଜେ ଜାଣିଥିଲ । ଆଉ ଦହିଖଟା, ମଞ୍ଜା ମହୁର କି ଯାହା ଟିକିଏ କଲେ ମନହୁଏ ଉଡ଼ିଯାଇ ତୁମକୁ ଟିକିଏ ଦେଇ ଆସନ୍ତି । ତୁମେ ଫୋନ୍ କର । କ'ଣ ରନ୍ଧା ହୋଇଛି ପଚାର । କେବଳ ଫୋନ୍‌ବାଟେ ସେଗୁଡ଼ାକ ଶୁଣିଯାଅ । ଦିନେ ଖେଚେଡ଼ି ଖାଇବ କହିଥିଲ । ଅନେକଥର ହୁଏତ ଖେଚେଡ଼ି ହୋଇଛି । କିନ୍ତୁ କେତେବେଳେ ତୁମ ଦେହ ଖରାପ... କେତେବେଳେ ଡ୍ରାଇଭର ନାହିଁ । ତେଣୁ ସେଇ ଖେଚେଡ଼ି ଟିକକ ମଧ୍ୟ ମୁଁ ତୁମକୁ ଦେଇପାରି ନାହିଁ ।

ପ୍ରତିଦିନ ପୂଜାରେ ତୁମେ ଆସିବ ପିଲାଙ୍କୁ ଧରି । ସେ ଆନନ୍ଦ ! କୁମାରପୂର୍ଣ୍ଣିମାର ସେ ରାତି ? ସତେ କ'ଣ ଆଉ ଜୀବନରେ ଆସିବନି ? ଆଉ ତୁମ ବାଡ଼ିରୁ ଆସୁଥିବା ହଳଦିଆ କନିଅର, ମନ୍ଦାର, ଯୂଇ ଓ ଚାମେଲୀ ? ସେମାନେ ଆସି ଠାକୁରାଣୀଙ୍କ ଗଳାରେ ମାଳ ହୋଇ ଝୁଲିବେନି ? କେମିତି ହେବ ସେ ଦିନଗୁଡ଼ାକ ? ଶ୍ରାଦ୍ଧକୁ ତୁମେ ଯଦି ଦେହ ଖରାପ ହେତୁ ନ ଆସ, କେତେ ଖାଲି ଖାଲି ଲାଗେ ସେ ଦିନଟା, ଅଥଚ ସବୁଦିନ ପାଇଁ ତୁମେ ଚାଲିଯାଉଛ ମୋତେ କିଛି ନ କହି ? ଦିନେ ମୁଁ କହିଥିଲି "ଓହୋ ! ଏତେ କଷ୍ଟ ହେଲାଣି, ମରିଗଲେ ଏ ଜଞ୍ଜାଳରୁ ରକ୍ଷା ମିଳନ୍ତା ।" ସାଙ୍ଗେ ସାଙ୍ଗେ କହିଥିଲ, "ତୁମେ ଚାଲିଗଲେ ଆମମାନଙ୍କୁ କିଏ ଦେଖିବ ? ଆମର ସେବା ଶୁଶ୍ରୂଷା କିଏ କରିବ ? ତେଣୁ ତୁମେ ସେ କଥା ତୁଣ୍ଡରେ ଧର ନାହିଁ ।" ମନେ ମନେ ହସୁଥିଲି । ମୁଁ ବୟସରେ ବଡ଼ ହୋଇ ରହିବି ଆଉ ଇଏ ଚାଲିଯିବେ ! ସେ ହସ ଆଜି ମୋତେ ଖତେଇ ହେଉଛି ।

ଯେଉଁଦିନ ତୁମ ବେକ ପାଖର ଫୁଲା ଦେଖାଇ କହିଲ, ''ଦେଖିଲ ଭାଉଜ ! ମୋର ଏଠି ଏମିତି କ'ଣ ହୋଇଛି ? ତଣ୍ଟିଟା ବସିଯାଇଛି !'' ଯଦିଚ ମୁଁ ଜାଣେନି ସେ କ'ଣ ରୋଗ, ତଥାପି ମୋ ଦେହରୁ ଦଲକାଏ ରକ୍ତ ଖସିପଡ଼ିଥିଲା । ଇଏ କି ରୋଗ ? କ'ଣ ଏମିତି ହେଲା ? ଆଉ ସେଇଦିନ ସଞ୍ଜରେ ଆମ ଘରକୁ ଆସିଥିଲ । କହିଲ, ''ଭାଉଜ ! ତୁମ ସହିତ ମୋର ଗୋଟେ ପରାମର୍ଶ ଅଛି ।'' ତା'ପରେ କହିଥିଲ ସେ କଥା । ତୁମକୁ କ୍ୟାନ୍ସର ହୋଇଛି ବୋଲି ଡାକ୍ତର ପରୀକ୍ଷା କରିବାକୁ କହିଛନ୍ତି । ମୁଁ ସ୍ତବ୍ଧ ହୋଇଯାଇଥିଲି । ତଥାପି ତୁମେ ଯେପରି ଭୟ ନ କର, ଦମ୍ଭ ଦେବାକୁ କହିଲି, ''ଠିକ୍ ଅଛି, ସେମାନେ ପରୀକ୍ଷା କରନ୍ତୁ । ଯାହା ଭାବିଦେବେ ସେଇଟା କ'ଣ ହୋଇଯିବ ?'' କିନ୍ତୁ ତାହା ଥିଲା ନିରାଟ ସତ୍ୟ । ଆଉ ତା' ପରଦିନ କି ପ୍ରକାର ଯନ୍ତ୍ରଣା ଦେଇ ମୁଁ ଗତି କରିଛି, ସେ ପ୍ରଭୁଙ୍କୁ ଜଣା । ତୁମ ପାଇଁ... ବାପିଙ୍କ ପାଇଁ... ପିଲାଙ୍କ ପାଇଁ ମନ ବିକଳ ହୋଇ କାନ୍ଦୁଥିଲା । ଦିନ ଗୋଟାଏ କି ଦେଢ଼ଟା ବେଳେ ବାପି କଟକରୁ ସେଇ କଥା କହିବା ମାତ୍ରେ ମୋର ବକ୍ଷ ବିଦୀର୍ଣ୍ଣ ହୋଇ ଯାଇଥିଲା । ''କ'ଣ କରିବା ବାପି ! ଆମେ କ'ଣ କରିବା ?'' କରିବା ପାଇଁ ଯାହା ଚେଷ୍ଟା ସେ ସବୁ ବିଫଳ ହୋଇଗଲା । ମାଡ୍ରାସ୍, ଯୋଧପୁର, ଦିଲ୍ଲୀ, କସୌଲୀ ! କେଉଁଠାରେ ସେ ମୃତସଞ୍ଜିବନୀ ମିଳି ନ ଥିଲା । କେଉଁଠି ସାମାନ୍ୟ ଆଶା... ଆଉ କେଉଁଠି ସମ୍ପୂର୍ଣ୍ଣ ନିରାଶା ।

ଶେଷରେ ଓଡ଼ିଶା ଫେରି ଆସିବାକୁ ମୁଁ ଅନୁରୋଧ କରିଥିଲି । କିନ୍ତୁ ତୁମେ ବୋଧହୁଏ ଚାହୁଁ ନ ଥିଲ ତୁମର ଏ ରୂପ କେହି ଦେଖୁ ବୋଲି । ଆସି ନ ଥିଲ । ହଠାତ୍ ଦିନେ ଶୁଣିଲି ତୁମେ ଆସୁଚ । ରାତିରେ ଫୋନ୍‌ରେ ଦିନେ କହିଥିଲ, ''ମୁଁ ପୁଣି ତୁମ କୋଳକୁ ଫେରିଯିବି ଭାଉଜ ।'' ତୁମେ ଫେରିଆସିଲ । ମୋ କୋଳକୁ ନୁହଁ । ତୁମ ନିଜ ଘରକୁ । ସେଠାରେ ତୁମକୁ ଅନେକ ଯନ୍ତ୍ରଣା ଭୋଗିବାର ମୁଁ ଦେଖିଛି । ଯେଉଁଦିନ ସାରାରାତି ଅନିଦ୍ରା ପରେ ଆମେ ଘରକୁ ଆସିବାକୁ ବାହାରିଛୁ, ତୁମେ କହିଲ, ''ଏତେ କଷ୍ଟ, ଏତେ ଯନ୍ତ୍ରଣା ପରେ ମଧ୍ୟ ମୃତ୍ୟୁ ଆସିଲାନି ? ମୃତ୍ୟୁ କ'ଣ ଏଡ଼େ ଭୟଙ୍କର ? ଏତେ ଯନ୍ତ୍ରଣାଦାୟକ ? କାହିଁକି ମୁଁ ଚାଲିଗଲି ନାହିଁ ? ତୁମର ସେଇ ନରମ ଗାଲକୁ ଖାଲି ଟିକିଏ ଆଉଁସିଦେଲି । ''ଏମିତି କୁହ ନାଇଁ ?'' ଏତିକି ମାତ୍ର କହିଥିଲି । ମୋ ଭିତରେ ଅନେକ କୋହ ଓ ଲୁହ । ତାକୁଇ ପାଥେୟ କରି ମୁଁ ଘରକୁ ଲେଉଟିଛି ।

ତୁମେ ମତେ ଅନେକ କଥା କହିଛ ମାଡ୍ରାସରେ ଥିବାବେଳେ । ରାତିରେ ଅନିଦ୍ରା ରହି ସେଇ ଦେହର ସମ୍ପୂର୍ଣ୍ଣ ଦୁର୍ବଳତା ମଧ୍ୟରେ । ମୁଁ ତୁମକୁ ବୁଝେଇଛି କି ବୁଝେଇପାରିନି ସେ କଥା ତୁମେ ଜାଣିଥିବ । ଆଜି ତୁମେ ନାହଁ । ତୁମର ଶରୀରଟା ସିନା ଚାଲିଯାଇଛି ସବୁଦିନ ପାଇଁ ? କିନ୍ତୁ ଆତ୍ମା ତ ଅମର ! ଆଉ ଏଇ ଦିନଗୁଡ଼ାକ ! ମୁଁ ଅନବରତ ତୁମ ସହିତ ମନେ ମନେ ଅନେକ କଥା କହୁଛି । ତୁମେ ନିଶ୍ଚୟ ଶୁଣିପାରୁଥିବ । ଦେଖିପାରୁଥିବ ଆମେ ସମସ୍ତେ ତୁମକୁ ହରାଇ କି ପ୍ରକାର ହା ହତାଶରେ ଦିନ କାଟୁଛୁ । ତୁମେ କହିପାରୁଥିଲେ କହନ୍ତ "ଛିଃ ! ମୋ ପାଇଁ ବ୍ୟସ୍ତ ହେଉଛ ! ମୁଁ ପରା ଅପେକ୍ଷା କରିଥିଲି ସିଏ ଗଲାଦିନୁ... କେବେ ଏଥିରୁ ମୁକ୍ତ ହେବି ବୋଲି !" ତୁମେ କହିପାରିବ । କାରଣ ତୁମେ ଅନ୍ୟଲୋକରେ ଅଛ । ଆମେ ଏଇ ମାୟାମୟ ସଂସାରର ପ୍ରାଣୀ । ତେଣୁ ଆମର ଦୁଃଖ...ଶୋକ...ଯନ୍ତ୍ରଣା ତୁମକୁ ବର୍ତ୍ତମାନ ହାସ୍ୟାସ୍ପଦ ମନେହେବ । ତୁମେଇ ତ ଦିନେ କହିଥିଲ, "ଯିଏ ଭୁକ୍ତଭୋଗୀ... ସେଇ ଜାଣେ ତା'ର ଯନ୍ତ୍ରଣା— ଅନ୍ୟମାନେ ବୁଝିବେ କିପରି ?"

ତୁମ ଆତ୍ମାର ସଦ୍‌ଗତି ପାଇଁ ମୁଁ କାହିଁକି କହିବି ? ମୁଁ ଦେଖିଛି ତୁମେ କହିଚ, "କଷ୍ଟ...କଷ୍ଟ... ହେ ଭଗବାନ୍ ! ହେ ପ୍ରଭୁ ! ମୋତେ ମୁକ୍ତି ଦିଅ ।" ଶେଷ ସମୟରେ ମଧ୍ୟ ସେଇ ଭାଷା ତୁମର ତୁଣ୍ଡରେ ଫୁଟିଉଠିଛି । ତିନିଦିନ ଧରି ଗଙ୍ଗା ଜଳ ପିଇ ପିଇ ପ୍ରଭୁଙ୍କୁ ନୀରବରେ ସ୍ମରଣ କରି କରି ତୁମେ ଅମର ଧାମକୁ ଚାଲିଯାଇଛ । ଅଥଚ ଆମେ ଅନେଇ ରହିଛୁ ଆକାଶକୁ । କେବେ ପୁଣି ତୁମେ ଓହ୍ଲେଇ ଆସିବ ସେଇଭଳି ହସ ହସ ମୁହଁରେ ଓ ସୁଧାମୟ କଣ୍ଠରେ କହିବ, "ଭାଉଜ ! ହେଇଟି ମୁଁ ଆସିଗଲି ।"

**ଭାଉଜ**
ଶୈଳରାଣୀ ମିଶ୍ର
ଚନ୍ଦ୍ରାଲୋକ
ପ୍ଲଟ୍ ନଂ. ଡି ୯, ବି.ଜେ.ବି. ନଗର
ଭୁବନେଶ୍ୱର - ୭୫୧ ୦୧୪

# ଝିଅ

ଯେ ଝିଅ ସେ ମାଗି, ସେ ସୁଧା ଥିଲା । ଆମେ ଭାଇମାନେ ତାକୁ ଝିଅ ବୋଲି ଡାକୁ । ଝିଅ ବୋଲି ଡାକିଦେଲେ ସେ ଦୌଡ଼ି ଦୌଡ଼ି ପ୍ରଜାପତିଟିଏ ପରି ଚାଲିଆସୁଥିଲା ଆମ ପାଖକୁ । ଆମ ଘରେ କ'ଣ କିମିତି ଭଗବାନଙ୍କ ଅଭିଶାପ ଥିଲା କେଜାଣି, ଝିଅ ଆଦୌ ଜନ୍ମ ହୁଅନ୍ତି ନାହିଁ । ଜନ୍ମ ହେଲେ ବି ପିଲାବେଳୁ ମରିଯାଆନ୍ତି । ବୋଉର ସେଇ ଅବଶୋଷ ରହିଯାଇଥିଲା । ତେଣୁ ତାର ଦୁଇଟି ଝିଅ ମରିଗଲା ପରେ ସେ ପ୍ରଭୁ ଜଗନ୍ନାଥଙ୍କୁ ମାଗି ମାଗି ଯେଉଁ ଝିଅଟି ପାଇଥିଲା, ତା'ର ନାଆଁ ରଖିଥିଲା ମାଗି । ଆଉ ସେ ସବୁବେଳେ ତାକୁ ମାଗି ବୋଲି ଡାକୁଥିଲା । ଝିଅକୁ ଦି'ତିନି ବର୍ଷ ହୋଇଥିଲାବେଳେ ତାକୁ ଗୋଟିଏ ଶାଢ଼ି ପିନ୍ଧାଇ ବାଇଶି ପାହାଚରେ ଠିଆ କରାଇ ଭକ୍ତମାନଙ୍କୁ ପଇସା ମାଗିଥିଲା । ଏଇଟା ବୋଉର ମାନସିକ ଥିଲା । ଏମିତି ଗୁଲୁଗୁଲିଆ ଝିଅର ଶାଢ଼ୀପିନ୍ଧା ତୋରୋଟି ଭାଷାରେ ପଇସା ମାଗିବା ଶୁଣି ମହିଳା ଭକ୍ତମାନେ ହସି ହସି ତା ହାତରେ ପଇସା ଗୁଞ୍ଜିଦିଅନ୍ତି । ତା ପରେ ସେଇ ମାନସିକ ରକ୍ଷାକରି ବୋଉ ତାକୁ ବାଇଶି ପାହାଚରେ ଗଡ଼େଇ ଦେଇଥିଲା । ଫୁଲ ପାଖୁଡ଼ାଟାଏ ଯେମିତି ଉଡ଼ି ଉଡ଼ି ତଳକୁ ତଳକୁ ଖସିପଡୁଥିଲା, ସିମିତି ଦିଶୁଥିଲା ଝିଅ ।

ଝିଅର ପଢ଼ାପଢ଼ିରେ ବହୁତ ଝୁଙ୍କ୍ ଥିଲା ପିଲାଦିନୁ । ନନା ଆମକୁସବୁ ସନ୍ଧ୍ୟାରେ କଟକ ଡଗରପଡ଼ା ଘରେ ବସି ପାଠ ପଢ଼ାନ୍ତି । ଝିଅ ମଧ୍ୟ ଆମ ସାଙ୍ଗେ ପଢ଼ିବାକୁ ବସିଯାଏ । ସେ ପଢୁଥାଏ ଚକ୍ରଧର ମହାପାତ୍ରଙ୍କ 'ହସଖେଳ' ବହିର ପ୍ରଥମ ଧାଡ଼ିଟି ''ପାଠ ପଢ଼େ ରାମ ମନ ଲଗାଇ'' । ବଡ଼ପାଟିରେ ପଢୁଥାଏ । ମନ ବୁଝିଲା ନାହିଁ । କେତେ ଥର ସେଇଆ ସେଇଆ ପଢୁଥିବ ? ସେ ତା ପାଖରେ ବସିଥିବା କାଳିଆକୁ ପଚାରିଲା— କାଳିଆ ଭାଇନା, ତା ପରେ କଣ ଲେଖା ହୋଇଚି କହ । କାଳିଆ ଅଙ୍କ କରୁଥିଲା, ଆସୁ ନଥିଲା । ସେ ହଠାତ୍ ଚିଡ଼ିଉଠି କହିଲା— ପଢ଼, ହଜାର

ଥର ପଢ଼, ପାଠ ପଢ଼େ ରାମ ମନ ଲଗାଇ । କାଳିଆର ପାଟିରେ ସେ ଦବିଗଲା ଆଉ ଚୁପ୍ ଚୁପ୍ ପଢ଼ିଲା— ପାଠ ପଢ଼େ ରାମ ମନ ଲଗାଇ । ଏଇ ହେଲା ତାର ଆଦ୍ୟ ପଠନ ।

ପୁଣି ଝିଅ ସ୍କୁଲରେ ପଢ଼ିଲା । ତା ଅକ୍ଷର ଗୋଲ ଗୋଲ । ସାହିତ୍ୟ ପଢ଼ିବାରେ ତାର ବହୁତ ଝୁଙ୍କ । ଅଳ୍ପକେ ସନ୍ତୁଷ୍ଟ ହେବା ପିଲା ନୁହେଁ ସିଏ । ଆମ ଠାରୁ ଚାରିବର୍ଷ ତଳେ ପଢୁଥାଏ । ମୋର ଓ ଲକ୍ଷ୍ମଣର ରଚନା ଖାତା ଆମେ ନ ଥିଲାବେଳେ ଆମ ମୁଣିରୁ ନେଇ ପଢ଼େ । ପଢୁଥାଏ ଗଭୀରଭାବେ । ଯେଉଁ ଶବ୍ଦଗୁଡ଼ାକର ଅର୍ଥ ନ ବୁଝେ, ତାକୁ ମତେ ପଚାରେ । ଆଉ ସେଇ ଶବ୍ଦକୁ ଲଗାଇ ବାକ୍ୟ ଲେଖେ, କେବଳ ମନେ ରହିବା ପାଇଁ । ତାର ରଚନା ଖାତା ମୋତେ ଦେଖାଏ । ମୁଁ ପଢ଼ିଚି । ବହୁତ ଉଚ୍ଚମାନର ଲେଖା । ମୁଁ ପଢ଼ି ତାକୁ ପରୀକ୍ଷା ଖାତାରେ ନମ୍ବର ଦେବା ଭଳି ନମ୍ବର ଦିଏ । ଯେଉଁଠି ବନାନ ଭୁଲ୍ ହୋଇଚି, ଲେଖା ଠିକ୍ ହୋଇନାହିଁ, ତାକୁ ବୁଝାଇଦିଏ । ତା ପରଠୁ ସେମିତି ଭୁଲ୍ ସେ କେବେ କରିନାହିଁ ।

ଆମେ ତିନିଭାଇ ରେଭେନ୍ସା କଲେଜକୁ ଆସିଲୁ । ଝିଅଟା ଏକୁଟିଆ ନୟାଗଡ଼ରେ ରହିଗଲା । ପଢ଼ାପଢ଼ିରେ ସାହାଯ୍ୟ ପାଇଲା ନାହିଁ । ଚିଠି ଲେଖେ, ରାମଭାଇ ଜଲ୍‌ଦି ଆସ । ମତେ ଇଂରାଜୀ, ଅଙ୍କ, ସାହିତ୍ୟ ପଢ଼େଇଦେବ । ମୋ କକେଇଝିଅ ଭଉଣୀ ସରଯୂ ଓ ସିଏ ଏକା ସାଥିରେ ପଢ଼ନ୍ତି । ମୋର ବାର୍ଷିକ ପରୀକ୍ଷା ସରିଗଲେ ମୁଁ ସାଙ୍ଗେ ସାଙ୍ଗେ ପଳେଇଆସେ । କାରଣ ମୁଁ ଆର୍ଟସ୍ ପଢୁଥିଲି । ଲକ୍ଷ୍ମଣ ଓ କାଳିଆ ସାଇନ୍ସ ପଢୁଥିଲେ । ସେମାନେ ରହିଯାଆନ୍ତି ତାଙ୍କର ପ୍ରାକ୍ଟିକାଲ ପରୀକ୍ଷା ପାଇଁ । ମୁଁ ଆସିଲେ ରାତି ଅନିଦ୍ରା ହୋଇ ମଶିଣା ଉପରେ ଲଣ୍ଠନ ଆଲୁଅରେ ଝିଅକୁ ଓ ସରଯୂକୁ ପଢ଼ାଏ । ବୁଝାଇ ଦିଏ । ସେତିକିରେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ମୋତେ ଲେଖିଦେବାକୁ କହନ୍ତି, ମୁଁ ଇଂରାଜୀ ଓ ଓଡ଼ିଆ ଲେଖିଦିଏ । ସେମାନେ ମନ ଆନନ୍ଦରେ ରାତି ଗୋଟା ଲାଗି ତାକୁ ଘୋଷିଦିଅନ୍ତି ।

ତାର ସ୍ନେହ ସବୁ ଭାଇଙ୍କ ପାଖରେ ସମାନ ଥିଲା । ତାକୁ ଯିଏ ଯାହା ଖାଇବାକୁ ଦେବ ସେ ସମାନ କରି ଆଗ ଆମକୁ ଟିକିଏ ଟିକିଏ ଦେଇ ପରେ ତା ଭାଗଟା ସିଏ ଖାଇବ । ତା ପରେ ଝିଅର ବାହାଘର ହେଲା ବାଙ୍କୀ ହରିରାଜପୁରରେ ଇଞ୍ଜିନିୟର ସତ୍ୟବାଦୀ ପଣ୍ଡାଙ୍କ ସହିତ । ନନା ମତେ ନୟାଗଡ଼ରୁ ପଠାଇଲେ ବାଙ୍କୀକୁ ନିର୍ବନ୍ଧ ଡାଲା ଦେଇ । ଉଦୁଉଦିଆ ଖରା ।

ମୋ ମାଉସୀପୁଅ ଭାଇନା— ପ୍ରଫୁଲ୍ଲ ଭାଇନା ବ୍ୟାଙ୍କ୍‌ରେ କାମ କରୁଥାନ୍ତି । ମୁଁ ତାଙ୍କରି ପାଖରେ ପହଞ୍ଚିଲି । ମହୁରିଆ ବାଜାବାଲା ଭଣ୍ଡାରୀ ସେ ଠିକ୍ କରି ଦେଇଥିଲେ । ମୁଁ ସେମାନଙ୍କୁ ସାଙ୍ଗରେ ଧରି ଗଲି ହରିରାଜପୁରକୁ । ସତ୍ୟବାଦୀବାବୁଙ୍କୁ ସେଇଠି ପ୍ରଥମେ ଦେଖିଲି । ଭାରି ଭଲ ଲାଗିଲା ତାଙ୍କୁ । ବେଶ୍ ସୁଦର୍ଶନ ଯୁବକ । ମୁହଁରେ ସର୍ବଦା ହସ । ମୋତେ ସାଙ୍ଗେ ସାଙ୍ଗେ ନିଜର କରିନେଲେ । ମହାନଦୀକୂଳରେ ଗାଆଁଟା ତାଙ୍କର । ନଦୀକୂଳକୁ ବୁଲାଇନେଲେ । ରାତିରେ ମତେ ସେଠାରେ ରଖିଲେ । ବହୁତ କମ୍ କଥା କୁହନ୍ତି । ସେତେବେଳେ ମୁଁ ତୃତୀୟ ବାର୍ଷିକ କଳାର ଛାତ୍ର, ରେଭେନ୍ସା କଲେଜରେ । ସକାଳୁ ସକାଳୁ ମତେ ବସ୍‌ରେ ବସାଇଦେଲେ । ମୁଁ ଚାଲିଆସିଲି । ଭାଇନା ସେତେବେଳେ ଓ.ଏମ୍.ପି.ର କମାଣ୍ଡାଣ୍ଟ ଥିଲେ । ସେଇ ବଙ୍ଗଳାରେ ଝିଅର ବାହାଘର ହେଲା ।

ଝିଅ ସାହିତ୍ୟ ପ୍ରତି ଅନୁରକ୍ତ ଥିଲା । ତାର ପ୍ରଥମ ଲେଖା 'ଆସନ୍ତା କାଲି'ରେ ବାହାରିଥିଲା । ଗୋଟିଏ କ୍ଷୁଦ୍ରଗଳ୍ପ ୧୯୫୮ରେ । ନନା ଷ୍ଟେସନକୁ ବୁଲିଯାଇଥିଲେ । ସେ ପତ୍ରିକାଟି ନେଇ ଆସିଥିଲେ ଅପାର ଆଗ୍ରହରେ । ପଢ଼ିଥିଲେ ବହୁତ ଆନନ୍ଦରେ । ଆମ ଗୁରୁ-ମହାପ୍ରଭୁ ସେତେବେଳେ କଟକ ଆସିଥିଲେ ପୁରୀରୁ । ତାଙ୍କ ଆଗରେ ନନା ଝିଅର ଗପଟି ପଢ଼ିଲେ । ସେ ମଧ୍ୟ ଝିଅର ଲେଖା ଓ ଭାଷାକୁ ବହୁତ ପ୍ରଶଂସା କରିଲେ । ସେଦିନୁଁ ନନାଙ୍କ ଆଶୀର୍ବାଦ ଝିଅର ଲେଖା କୃତି ଉପରେ ଝରିଲା । ଆଉ ସେ ପଛକୁ ଚାହିଁ ନ ଥିଲା । ଲେଖି ଚାଲିଲା ଅହରହ । କ୍ଷୁଦ୍ରଗଳ୍ପ, ଉପନ୍ୟାସ, ନାଟକ, କବିତା, କେତେ କଣ । ବହୁତ ପ୍ରଶଂସା ପାଇଚି ବହୁତ ଅନୁଷ୍ଠାନରୁ । ସତ୍ୟବାଦୀ ଚାଲିଗଲା ପରେ ଝିଅ ଭାଙ୍ଗିପଡ଼ିଲା । ତଥାପି ଏକୁଟିଆ ସମୟର ସଦୁପଯୋଗ କରିଲା ଗଳ୍ପ, କବିତା, ଉପନ୍ୟାସ ଲେଖି । ସେଇଥିରେ ସେ ପାଇଲା ଅପାର ଆନନ୍ଦ, ସନ୍ତୋଷ ଆଉ ଭରିଦେଲା ହଜାର ହଜାର ପାଠକଙ୍କ ମନରେ ଶ୍ରଦ୍ଧାର ସୁମନ ।

ମତେ କାଳିଆ କହିଲା ସେଦିନ ରାମଭାଇ, ଜାଣିଚୁନା ଝିଅର କ୍ୟାନ୍‌ସର ହୋଇଛି । ଦିନଟା ମନେଅଛି । ଛଅ ତାରିଖ ଫେବୃୟାରୀ ୧୯୯୫ । ସମୟ ଦିନ ୨ଟା । ମୋର ଦେହରୁ ରକ୍ତ ଶୁଖିଗଲା ଶୁଣୁ ଶୁଣୁ । ତା ପରେ ତାକୁ ଭାଉଜ ଓ ବାପି ମାଡ୍ରାସ ଆପୋଲୋ ହସ୍‌ପିଟାଲକୁ ନେଇଗଲେ । ସେଠାରେ ଡାକ୍ତରଙ୍କ ଚିକିତ୍ସା ଓ ପରୀକ୍ଷା ନିରୀକ୍ଷା ପରେ ମଧ୍ୟ କ୍ୟାନ୍‌ସର

କୋଉଠି ହୋଇଛି ଜଣାପଡ଼ିଲା ନାହିଁ । ଆମେ ତିନିଭାଇ ଭାଇନାଙ୍କ ଘରେ ବସି ମାଡ୍ରାସରୁ ଫୋନ୍ ମେସେଜ୍ ପାଇଁ ଚାତକ ପରି ଚାହିଁ ବସିଥାଉ । ତା ପରେ ସେଇଠି ତାର ଆୟୁର୍ବେଦିକ୍ ଚିକିତ୍ସା ହେଲା । ସେତିକିବେଳେ ସେ ପଣ୍ଡିଚେରୀ ବୁଲିବାକୁ ଗଲା । ସେଠାରୁ ଫେରି ତାର ମଝିଆଁ ଝିଅ ଓ ଜ୍ୱାଇଁଙ୍କ ସହିତ ଯୋଧପୁର ଗଲା । ପୁଣି ସିମଳା ଗଲା ଏଇ ଚିକିତ୍ସା ପାଇଁ । ସବୁଠାରେ ବିଫଳ ହେଲା । ଏ ରୋଗର ଆକ୍ରମଣରେ ସେ ସମ୍ପୂର୍ଣ୍ଣ କ୍ଲାନ୍ତ ଶ୍ରାନ୍ତ ଓ ଦୁର୍ବଳ ସ୍ୱାସ୍ଥ୍ୟଦେଇ ଝିଅ ଫେରିଆସିଲା ଭୁବନେଶ୍ୱରକୁ, ଜୁନ୍ ୧୦ ତାରିଖରେ । ଉଡ଼ାଜାହାଜରୁ ଓହ୍ଲାଇବା ଶକ୍ତି ହରାଇଥିଲା ସିଏ । ହୁଇଲ୍ ଚେୟାରରେ ସେ ବସି ଆସିଲା ତା ଝିଅ ନନ୍ଦୁ ସାଙ୍ଗରେ । ଆମେ ସମସ୍ତେ ରୁଣ୍ଡ ହୋଇଥିଲୁ । ଦେଖିଲୁ ତାର ସ୍ୱାସ୍ଥ୍ୟର ଦ୍ରୁତ ଅବନତି । ପ୍ରବଳ ଭାବରେ କ୍ଲାନ୍ତ ହୋଇପଡ଼ିଥିଲା ସେ । ସମସ୍ତେ ଆସିଲୁ ତା ଘରକୁ । ସେଠାରେ ସେ ସାମାନ୍ୟ ବିଶ୍ରାମ ନେଇ ଗପିଚାଲିଲା ଏଠିକା ଡାକ୍ତରଙ୍କର ଅବହେଳା ସମ୍ବନ୍ଧରେ । ଦିନକୁ ଦିନ ରୋଗ ବଢ଼ିବାରେ ଲାଗିଲା । କହୁଥାଏ ସମସ୍ତେ ଭଗବାନଙ୍କୁ ପ୍ରାର୍ଥନା କର ମୁଁ ଶୀଘ୍ର ଚାଲିଯାଏ । ଏ ଅସମ୍ଭବ ଯନ୍ତ୍ରଣା ସହ୍ୟ କରି ହେଉନାହିଁ । ସମସ୍ତଙ୍କ ଚକ୍ଷୁ ଅଶ୍ରୁପ୍ଳାବିତ, କଣ୍ଠରେ କୋହ । ସମସ୍ତେ ବାକ୍‌ଶକ୍ତିହୀନ ହୋଇ ତାକୁ ଓ ତାର ଯନ୍ତ୍ରଣାଦାୟକ ମୁହଁକୁ ଜଳଜଳ ଚାହିଁଥାଉ । ଭାଇନା ତାର ପାଖରେ ବସି ଅନେକ ସ୍ତୋତ୍ର ଗାଉଥିଲେ । ଦୀର୍ଘ ଦିନର ବିନିଦ୍ର ଆଖି କିଛି ସମୟ ପାଇଁ ବନ୍ଦ କରି ସେ ଶୁଣୁଥାଏ । ପୁଣି ଯନ୍ତ୍ରଣା । ସେ କିପରି ଏ ଯନ୍ତ୍ରଣା କେଉଁଠୁ ଆସୁଚି, କାହିଁକି ଆସୁଛି, ପ୍ରକାଶ କରିପାରୁ ନ ଥାଏ । ଦିନେ ଯନ୍ତ୍ରଣା-ମୁକ୍ତି ଓ ସାମାନ୍ୟ ଉପଶମ ପାଇଁ ତାର ଦୁଇଟିଯାକ ଗୋଡ଼କୁ ଘଷିଦେଲି । କହିଲା— ଆଃ...କି ଆରାମ । ଏତେ ଯନ୍ତ୍ରଣା ସତ୍ତ୍ୱେ ମଧ୍ୟ ତାର କହିବାର ଚାତୁରୀ କାବ୍ୟମୟ ଥିଲା । ଅପୂର୍ବ ଶୈଳୀରେ କଥା କହୁଥାଏ । ବାସ୍ତବିକ୍ ସେ ଜନ୍ମରୁ କବି ଓ ଲେଖିକା ହୋଇ ଆମ ଘରେ ଜନ୍ମିଥିଲା ।

୧ ଜୁଲାଇ ସନ୍ଧ୍ୟା ୭ଟାରେ ବାପି ଫୋନ୍ କଲା ଭାଉଜଙ୍କୁ । ବୋଉ ଆଉ କଥା କହୁନାହିଁ । ଡଃ ଗୋଏଙ୍କା ଆସିନାହାନ୍ତି । ଆମେ ସବୁ ସେଇ ଶାଳଶିଳ ବର୍ଷାରେ ଦୌଡ଼ିଲୁ । ଭାଇନା ଗାଡ଼ି ଭିତରେ ମହାମୃତ୍ୟୁଞ୍ଜୟ ମନ୍ତ୍ର ଗାଉଥାଆନ୍ତି ଅହରହ ଝିଅ ଘରେ ପହଞ୍ଚିବା ପର୍ଯ୍ୟନ୍ତ । ଦେଖିଲୁ ଗୋରା ତକ ତକ କୃଶ ତନୁ ମାଗିର । ମୃତ୍ୟୁର ଛାପ ଟୋପିଏ ବି ନାହିଁ । ତଥାପି ବହୁ ମାସ ବର୍ଷ ହେବ ଶୋଇ ନ ଥିବା ଝିଅଟି ଶୋଇଯାଇଛି

ଏଇଲେ ଚୁପ୍‌ଚାପ୍ ହୋଇ । ମୋ ପାଟିରୁ ବାହାରି ଆସିଲା— ପାଟି କର ନାଇଁ, ଝିଅ ଉଠିପଡ଼ିବ । ବର୍ଷଣ-ମୁଖର ସନ୍ଧ୍ୟା କରୁଣିତ ହୋଇଉଠିଲା ।

ବିଜୟ, ବ୍ରଜ, ରାମ ଓ ମୁଁ ମିଶି ଝିଅର ପାର୍ଥିବ ଶରୀରଟା ବୋହିନେଲୁ ପୁରୀ ସ୍ୱର୍ଗଦ୍ୱାର । ଦଶଦିଗପାଳ ଓ ଭଗବାନଙ୍କୁ ସାକ୍ଷୀ ରଖି ତାକୁ ଜୁଇ ଉପରେ ଶୁଆଇଦେଲୁ ଆମେ ଚାରିଜଣ ଅଶ୍ରୁଳ ମୁଖରେ । ଝିଅ ଆମର ଜଳିଗଲା । ପାଉଁଶ ହୋଇଗଲା, ଦୁଇଘଣ୍ଟା ମଧରେ । ଆଉ ତାହାରି ଅସ୍ଥି ସଞ୍ଚୟନ କରି ଗୋଟାଏ ମାଟିଘଡ଼ିରେ ପୂରାଇ ନେଇ ଆସିଲୁ ସ୍ୱର୍ଗଦ୍ୱାରରୁ । ଝିଅ ଆମର ଭସ୍ମରେ ପରିଣତ ହେଲା ଆମରି ଆଖିଆଗରେ । ଭଗବାନ କି କ୍ରୁର ? ତା ପରି ସର୍ବଂସହାର ଦେହରେ କର୍କଟରୋଗର ଜୀବାଣୁ କାହିଁକି ଭରିଦେଲେ ? ସେ ତ କେବେ କାହାରି କ୍ଷତି କରିନାହିଁ । ସର୍ବଦା ହସ ହସ କଳକଳ କାବ୍ୟମୟୀ ଝିଅଟି ଆମର ।

ମୁଁ ଜୋର ଦେଇ କହୁଚି, ଯେଉଁ ଭଗବାନ ତାକୁ ଏପରି ଦୁଃଖ-ଯନ୍ତ୍ରଣାରେ ତିଳ ତିଳ କରି ମାରିଲେ, ସେ ନିଜକୁ ଦୋଷୀ ମନେକରି ତାର ଅମର ଆତ୍ମାକୁ ଶାନ୍ତି ପ୍ରଦାନ କରିବେ ।

ବାପି, ବେବି, ନନ୍ଦୁ, ରୋଜୀଙ୍କର ଅସୀମ ଧୈର୍ଯ୍ୟକୁ ମୁଁ ଧନ୍ୟବାଦ ଦେଉଛି । ସେଇ ଭଗବାନ ସେମାନଙ୍କୁ ରକ୍ଷା କରିବେ ।

**ରାମଭାଇ**
ରାଧାମାଧବ ମିଶ୍ର
ଡି.୧୦୮ ମ୍ୟୁଜିୟମ୍ ଫ୍ଲାଟ୍
ଭୁବନେଶ୍ୱର

# "ରୀଣା"— ସ୍ମୃତିର ରଙ୍ଗ

—ଶୈଶବର ବି ଗୋଟିଏ ଗନ୍ଧ ଅଛି । ତାହା ମୋ ପାଇଁ ହେଉଛି ଗୋବରଲିପା ମାଟିପିଣ୍ଡା ଏବଂ ଅଗଣାରେ ଫୁଟିଥିବା ମଲ୍ଲୀଫୁଲର ମିଶାମିଶି ଗୋଟାଏ ବାସନା ।

—ସ୍ମୃତିର ରଙ୍ଗ ଅଛି । ତାହା ହେଲା ମୋ ପାଇଁ ରକ୍ଷି ପାହାଡ଼ର ନୀଳିମା । ଶୈଶବର ଗନ୍ଧରେ ଉଙ୍କୁଟିଉଠୁଥିବା ରୂପଗୁଡ଼ିକର ସ୍ମୃତି ଟାଣିନିଏ ମତେ ରକ୍ଷି ପାହାଡ଼ ବକ୍ଷରେ ସେବେ କରୁଥିବା ବଣଭୋଜି ।

ଦଶ ବର୍ଷର ରୀଣା ସହ ସାହିର ଦଶ ବର୍ଷରୁ ବାରବର୍ଷ ଯାଏ କେତେ ଡଜନ ଝିଅଙ୍କୁ ନେଇ ରକ୍ଷି ପାହାଡ଼ର ଶୀର୍ଷରେ ଠିଆ ହୋଇ ନିମ୍ନରେ ନିଜ ଘର ଖୋଜି କାଢ଼ିବାର ପ୍ରଚେଷ୍ଟା କଲାପରି ଯେଉଁ ନେତୃତ୍ୱ ମୁଁ ନେଇଥାଏ, ତାହା ସ୍ମୃତିର ରଙ୍ଗରେ ଅନୁଭୂତିକୁ ବି ରୂପାୟିତ କରିଥାଏ ।

ବାଲ୍ୟାବସ୍ଥାର ପରେ ପରେ ଏବଂ କୈଶୋର ଅବସ୍ଥାର ବେଶ୍ ପୂର୍ବରୁ ଏ ଯେଉଁ ବୟସଟା ଜୀବନରେ ଅତିବାହିତ କରିବାକୁ ହୁଏ, ତାର ସଂଜ୍ଞା ଭାଷାରେ ନିରୂପଣ କରାଯାଇ ପାରେନା । ମାତ୍ର ବେଶ୍ ଉପଲବ୍ଧି କରିହୁଏ ।

ରୀଣାର ଗୋଲାପ, ଯୂଇ, (ରଘୁମାଷ୍ଟ୍ରଙ୍କର ଦୁଇ ଝିଅ ଜ୍ୟୋତି ଏବଂ ଛିନୁଅପା) ଏବଂ ସରଯୂଙ୍କୁ ବାଦ ଦେଇ ଏ ବୟସର ଅଧ୍ୟାୟଗୁଡ଼ା ମୋତେ ପଢ଼ି ହୋଇ ପାରେନି କି ଅନୁଭବ କରିହୁଏନି । ସେମାନଙ୍କ ସମାରୋହରେ ଜଣାଯାଏ ସତେ ଯେମିତି ବୋଝେ ମଲ୍ଲୀଫୁଲ ହଠାତ୍ ଆକାଶରୁ ଝରିପଡ଼ିଲା । ଖାଲି ହସ ...ହସ ଆଉ ହସ । ଶଙ୍କା ସଙ୍କଟହୀନ ପୃଥିବୀରେ ଗୁଡ଼ିଏ ଅପାପବିଦ୍ଧ ପ୍ରାଣର ଉଦ୍‌ବେଳନ ପ୍ରତି ଦୃଷ୍ଟିପାତ କଲେ ମନର ଅନୁକୋଣରେ ଯେଉଁ ଶୋଚନାମୁକ୍ତ ଭାବର ଉଦ୍ରେକ ହୁଏ, ତାହା ବସ୍ତୁତଃ ନୈସର୍ଗିକ । ଯେପରିକି ସନ୍ଧ୍ୟାର ଧୂପଛାୟାରେ କୁହରି ଉଠୁଥିବା ପ୍ରାର୍ଥନା "ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ"ର ପ୍ରଥମ ଲହର ପରି ।

ତା ପରେ ପରେ ଘର ଭିତରୁ ଶୁଭେ ନିଶ୍ଚୟ କମିନାନୀର କଣ୍ଠସ୍ୱର—ମାଗି, ସନ୍ଧ୍ୟା ହୋଇଗଲା, ଚଉରାମୂଳେ ଏବଂ ଘରର ଦ୍ୱାରମୁହଁରେ ସଞ୍ଜବଳିତା ଦେଇଦେ । ସଞ୍ଜବଳିତା ଦେବାଠୁ ଆରମ୍ଭ କରି ମାଟି ଚଟାଣରେ ପୁଚିଖେଳି, ବ୍ରାହ୍ମଣୀ ଦେଈ କୂଅରୁ ପାଣିକାଢ଼ି ଗରାରେ ଘରକୁ ବୋହିବାଠାରୁ ଗାର ଗାର ଚାଦର ଘୋଡ଼ିହୋଇ ବଜାରରୁ ଚିନାବାଦାମ କିଣି ଆଣିବା ପର୍ଯ୍ୟନ୍ତ ସବୁଗୁଡ଼ିକ ବେଶ୍ ଋଦ୍ଧିମନ୍ତ ରୂପ ନେଇ ଆଖି ଆଗକୁ ଆସନ୍ତି ।

—ଅନୁଭୂତିର ବି ରୂପ ଅଛି । ଏଇଠି ଧରାପଡ଼ିଯାଏ, ନୟାଗଡ଼ ବ୍ରାହ୍ମଣସାହି, ଧାଡ଼ିମୁଣ୍ଡିଆ ଛଅ ବଖରା ଚାଳଘର ଏବଂ ବେଶ୍ ଚଉଡ଼ା ବାରଣ୍ଡା । ଅନୁଭୂତିର ଏ ଅସଂଖ୍ୟ ରୂପଗୁଡ଼ିକରୁ ତୁ ଯେମିତି ବାଛିବିଚାରି ବାରିହୋଇଯାଉ । ସେ ଅନୁଭୂତିର ମୃତ୍ୟୁ ନଥାଇ· ମଧ ତାକୁ ଭୁଲି ଯିବାକୁ ବାଧ ହେଲେ କେତେ କଷ୍ଟକର ହେବ ଥରେ ଭାବି ଦେଖ ।

ମାହାନ୍ତି ସାହି ଏବଂ ଦାଣ୍ଡସାହିର ଖୁଦୁରୁକୁଣୀ ପ୍ରତିଯୋଗିତାରେ ତୋର ନ୍ୟାୟାଧୀଶ ହେବାର ଯୋଗ୍ୟତା କଥା ଭାବିଲେ ସେ ଚରିତ୍ରର କେବେ ମୃତ୍ୟୁ ହୋଇପାରେ ବୋଲି ବିଶ୍ୱାସ ହୁଏନି । ଚଳଚଞ୍ଚଳ ହସ-ମୁଖର ଝିଅଟିଏ ବଡା ଫାଳର ଆୟତନ ନେଇ ସର୍ବଦା ନଇଁପଡ଼ିବାର ଭଙ୍ଗୀରେ ଡେଇଁ ଡେଇଁ ଚାଲୁଥିଲେ କିପରି ଦେଖାଯାଉଥିବ, ତାହା ଉପଲବ୍ଧି କଲେ ଚକ୍ଷୁରେ ସ୍ୱତଃ ଅଶ୍ରୁର ନିର୍ଝର ଉଙ୍କିମାରେ ।

ଅମାର (ରାଜାଙ୍କର ଆମ୍ବତୋଟା)ରୁ ବିଭିନ୍ନ ଆମ୍ବ ସଂଗ୍ରହ କରିସାରି ବନ୍ଧ ପୋଖରୀରେ ଛୋଟ ମାଛ ପହଁରିଲା ପରି ପାଣି ଭିତରେ ବୁଡ଼ି ବୁଡ଼ି ସଞ୍ଜ ଆଗରୁ ଘରକୁ ଫେରିବା ଥିଲା ଗ୍ରୀଷ୍ମଛୁଟି ଦିନଗୁଡ଼ିକର କର୍ମସୂଚୀ । ବନ୍ଧ ପୋଖରୀରେ ଏବେବି ଚିଙ୍ଗୁଡ଼ିଆ ଦଳ ଭିତରୁ ବହୁ କଇଁକଢ଼ ଉଙ୍କିମାରି ଫୁଟୁଛନ୍ତି । ମାତ୍ର ତା' କୋଳରେ ଗାଧୋଇବା ପାଇଁ ତୁ ନାହୁଁ । ଅମାରର ସେ ସମସ୍ତ ଆମ୍ବଗଛଗୁଡ଼ା ବହୁ ବିପର୍ଯ୍ୟୟ ଅତିକ୍ରମ କରି ବଞ୍ଚିଛନ୍ତି । ମାତ୍ର ତୁ ନାହୁଁ ଆମ୍ବ ଗୋଟାଇବା ପାଇଁ ।

ଅନୁଭୂତିର ଏ ଯେଉଁ ରୂପ, ତାର କିୟଦଂଶ ଉନ୍ମୋଚନ କଲାବେଳେ ଅଶ୍ରୁଳ ଭାବାବେଗ ଚରମପନ୍ଥୀ ହୋଇଯାଏ । ମନେହୁଏ ସୃଷ୍ଟିର ସମସ୍ତ ଶକ୍ତି ଏକତ୍ରିତ କରି ସହସା ବିସ୍ଫୋରିତ ହୋଇଯିବା ପାଇଁ । କୁଆଡ଼େ ଗଲା ସେ ସଶ୍ରଦ୍ଧ ଦିନଗୁଡ଼ା ? ନିଷ୍ପାପ ଅଲିଅଳ ଚରିତ୍ରଗୁଡ଼ାକରେ ଢାକିଢୁକି ହୋଇ ରହିଯାଇଥିବା ଅପାପବିଦ୍ଧ ସ୍ୱପ୍ନସବୁ ?

ଜୀବନକୁ ଅନୁରଣିତ କରି ଯେଉଁ ବୟସର ବୟସ ଆସିଗଲା, ତାହା ଚଳଚଞ୍ଚଳ ପ୍ରବହମାନ ହେବାକୁ ବେଶି ସମୟ ନଦେଇ ସାଂସାରିକ ବନ୍ଧନରେ ଛନ୍ଦିଦେଲା । କିଶୋରୀ ଜୀବନର ଅଧ୍ୟାୟଟା ସେଥିପାଇଁ ଥିଲା କ୍ଷୁଦ୍ରତମ ।

କିନ୍ତୁ ତାର ବହୁ ପୂର୍ବରୁ ରକ୍ଷିପାହାଡ଼ ଉପରେ ବଣଭୋଜି କରିବାର ବୟସ ପୂର୍ବରୁ ଗୀତ ଗାଇ ମନେ ରଖି ବିନା ସାହାଯ୍ୟରେ ଆବୃତ୍ତି କରିବାର ଅଭ୍ୟାସ ତତେ ଯେ ଦିନେ କେଉଁଠି ପହଞ୍ଚାଇଦବ ବେଶ୍ ଜଣା ପଡୁଥିଲା । ସେତିକିରେ ଶାନ୍ତ ହୋଇଯାଇଥିଲେ କେବଳ ଭଜନ ଏବଂ ପ୍ରାର୍ଥନା ଗାଇ ରହିଯାଇଥାନ୍ତୁ । ନିଜେ ସେପରି ଲେଖିବା ପାଇଁ ଯେଉଁ ପ୍ରଚେଷ୍ଟା ତତେ ଆଜି ଓଡ଼ିଆ ସାହିତ୍ୟରେ କେଉଁଠି ଠିଆକରାଇଛି ସବୁ ପାଠକ ଏବଂ ଲେଖକଙ୍କୁ ବେଶ୍ ଜଣା ।

ଭାବନାର ସ୍ତୂପୀକୃତ ନିର୍ଯ୍ୟାସ ଭାଷାର ଆଚ୍ଛାଦନରେ ପ୍ରକାଶ ଲାଭ କରିବା ପାଇଁ ଯେଉଁ ପ୍ରବଳ ଉଦ୍ୟମ, ସେ ଖାଲି ସେତେବେଳେ କିଆଁ, ଏବେବି ତ ମୋ ଚାରିପଟେ ଅହରହ ପଇଁତରା ମାରୁଛନ୍ତି ।

—କାଳିଆଭାଇନା(ଲେଖକ), ତମେ ଡାକ ମୁଁ ଲେଖୁଛି । ଯେଉଁ ଧାଡ଼ିଗୁଡ଼ାକର ପଦ ପଡୁନାହିଁ, ତାକୁ ପଛରେ ଚେଷ୍ଟାକରି ବଦଳାଇଦେବା । ଏଇ ପରିବେଶରେ କବିତାର ସୃଷ୍ଟି । ପରେ ପରେ ଗଳ୍ପ ।

କବିତା ଡାକିବା କ'ଣ ସହଜ ? ମୋ ପ୍ରଶ୍ନର ଉତ୍ତର ମିଳିଲା ! ଦାଶକାଠିଆ, ପାଲା ଏବଂ ଦୁଆରୀ ନାଚରେ ସେମାନେ ପରା ସାରାରାତି କବିତା ଓ କାବ୍ୟ ପରିବେଷଣ କରିଥାନ୍ତି । ତେବେ କାହିଁକି ନୁହେଁ ? What a man has done a man can do.

କେତେଗୁଡ଼ିଏ ସହଜ ବୋଧଗମ୍ୟ କବିତା ସେଭଳି ଜନ୍ମଲାଭ କରି ପ୍ରକାଶିତ ହେବା ପରେ ପରେ ଗଳ୍ପ ରଚନାରେ ମନ ଦିଆହେଲା । ଜଣାପଡ଼େନା ତୁ ମୋର ଗୁରୁ, ନା ମୁଁ ତୋର ଗୁରୁ । ଏକାନ୍ତରେ ଲେଖାଥିବା ମୋ ସମସ୍ତ କବିତା ତୁ ଅଲକ୍ଷ୍ୟରେ ପଢ଼ି କେତେ ଯେ ଆନନ୍ଦ ପାଉ ଏବଂ ସେହି ସ୍ମୃତିରେ ପୁଣି ଲେଖିବସୁ, ତାହା ଜାଣିବା ପାଇଁ ମତେ ବେଶି ସମୟ ଲାଗି ନ ଥିଲା । ମୁଁ ପୁଣି ଲେଖିବସୁଥିଲି ତତେ ପଢ଼ାଇବା ପାଇଁ ।

—ବେଦନାର ଭାଷା ଅଛି । ସେହିଟା ସେତେବେଳେ ହେଲା, ପ୍ରବଳ ଗ୍ରୀଷ୍ମରେ ରକ୍ଷିପାହାଡ଼ର ଚାଞ୍ଚେଡ଼ା ପଥର ଉପରେ ବସି ବଂଶୀବାଦନ କରିବାର ମୁହୂର୍ତ୍ତଗୁଡ଼ା । ମାତ୍ର ଏବେ ସେ ବେଦନାର ଭାଷା ଏତେ ରୁକ୍ଷ, କର୍କଶ ଏବଂ ଅବୋଧ

ଯେ, ମୁଁ ପଢ଼ିବା ପାଇଁ ଚେଷ୍ଟା କରିବାକୁ ସାହସ କରିପାରୁ ନାହିଁ । ବେଦନାର ରଙ୍ଗ ବର୍ଣ୍ଣହୀନ ନୁହେଁ, ବରଂ ବିବର୍ଣ୍ଣ ।

ବେତାରରେ ଉଦ୍‌ଘୋଷିତ ନାଟକ "ବକୁଳ ବନର ରାଧା", "ଯେ ଅଛୁଆଁ ଛୁଇଁଦେଲା" ପ୍ରଭୃତିର ସୃଷ୍ଟି ମନରେ ଭରିଦେଲା ଅନନ୍ତ ଉଦ୍ଦୀପନା । ଯାହା ଗଳ୍ପ ରଚନା ଏବଂ ଉପନ୍ୟାସ ରଚନା ପାଇଁ ପ୍ରଚୁର ଖୋରାକ ଯୋଗାଇଦେଲା । ଗୋଟିଏ ପରେ ଗୋଟିଏ ପ୍ରକାଶ ଲେଖା-ଜଗତରେ ତତେ ଥୋଇଦେଲା ବହୁତ ଉଚ୍ଚରେ । ମାତ୍ର ତୁ କ'ଣ କହିଲୁ ମତେ, "ମୋ ଲେଖାରେ ଯାହା ଥାଉନା କାହିଁକି, ତାକୁ ଯଦି ତମ ଲେଖା ସହ ତୁଳନା କରାଯାଏ, ସେ କେତେ ତଳେ ପଡ଼ିଯିବ, କହିହେବ ନାହିଁ । ମୋର ସବୁ କବିତା ପାଟି ଅଗରେ ରଖି ବିଭିନ୍ନ ସଭା ସମିତିରେ ତାକୁ ବକ୍ତୃତା ମାଧ୍ୟମରେ ଉଚ୍ଚାରଣ କରି ମତେ ଯେ କେଉଁଠି ପହଞ୍ଚାଇ ଦେଲୁ, ମୁଁ ଜାଣେନା ।

ସବୁବେଳେ ପାଖେ ପାଖେ ଥାଇ ଖାତା କଲମ ଧରି ଅଳିକରୁ, ତମେ ଡାକ ମୁଁ ଲେଖୁଛି । ଗୋଟାଏ ଗୋଟାଏ ଗଳ୍ପର ବହୁତ ଅଂଶ ସେଭଳି ଲେଖା ସରିବା ପରେ ତାକୁ ତୁ ସମ୍ପୂର୍ଣ୍ଣ କରୁ । ଲେଖିବା ପାଇଁ ଏ ଯେଉଁ ପରାକାଷ୍ଠା, ନିଷ୍ଠା ଏବଂ ଏକାଗ୍ରତା ଥିଲା, ତାହା ତୁଳନାରେ ବୋଧହୁଏ ତୁ ବହୁତ କମ ପାଇଛୁ ।

ଆଶାର ପୂର୍ଣ୍ଣତା ନ ଥାଏ, ସେ ଯେତେ କମ୍ ହେଉନା କାହିଁକି, ସାଂସାରିକ ଜୀବନର ହାହୁତାଶ ବହ୍ନି ଅତିକ୍ରମ କରି ଚାଲିଆସିବା ବେଳେ ଏତେ ଉଚ୍ଚରୁ ପଡ଼ି କେହି କେବେ ଛିନ୍ନଭିନ୍ନ ହୋଇ ନାହାଁନ୍ତି, ଯାହା ତୁ ହୋଇଛୁ । ଅଧା ଜୀବନରେ ସତ୍ୟବାଦୀବାବୁଙ୍କ ବିଦାୟ ଅବଶିଷ୍ଟ ଜୀବନ ପାଇଁ କ'ଣ ଛାଡ଼ିଗଲା ? ଏକ ମର୍ମାନ୍ତିକ ଦୁଃଖଦ ଜୀବନ । ସେଇ ଦଗ୍ଧ ଉପତ୍ୟକାରେ ଫୁଲ ଫୁଟାଇବାର ଚେଷ୍ଟା କରି କରି ତୁ ଆଗେଇଗଲୁ । ସେ ଫୁଲଗୁଡ଼ା ଆଉ କିଛି ନୁହେଁ, ତୋର ରଚନା । ସେଥିରେ ବି ପୂର୍ଣ୍ଣତା ନାହିଁ, କାରଣ ଦୁଇତୃତୀୟାଂଶ ଲେଖା ସରିଥିବା ତୋର ଉପନ୍ୟାସ "ଗଙ୍ଗା" ରହିଗଲା ଅସମ୍ପୂର୍ଣ୍ଣ ହୋଇ । ଆହୁରି ରହିଗଲା ଇଂରାଜୀରେ ଅନୁବାଦ ତୋର ଗଳ୍ପ ସଂକଳନ "ଜହ୍ନ ଓ ମୁଁ" । ତୋ ପାଇଁ ଯଦିଓ ସେଗୁଡ଼ା ଅସମ୍ପୂର୍ଣ୍ଣ, ସେ ସମ୍ପୂର୍ଣ୍ଣ ହେବ । ପାଠକମାନଙ୍କ ପାଖରେ ଠିକ୍ ପହଞ୍ଚିପାରିବ । ଏ କଳ୍ପନାର ଶପଥ ଦେବାକୁ ମୁଁ ଅନ୍ତତଃ କୁଣ୍ଠିତ ନୁହେଁ ।

ବୋଉର ସ୍ୱରଚିତ କବିତା ଏବଂ ଭଜନ ଆବୃତ୍ତି, କମିନାନୀର ଯାଉଣୁ ଆସୁଣୁ ଢଗ-ଢମାଳି ଗାଇବାର ଚରିତ୍ରଗତ ଅଭ୍ୟାସ, ପ୍ରତ୍ୟେକଟି ବହି ପଢ଼ି

ବିଶ୍ଳେଷଣ କରିବାର ଆଗ୍ରହ ଏବଂ ସର୍ବୋପରି ତାକୁ ଲେଖି ଅନ୍ୟ ଆଗରେ ପଢ଼ାଇ ଆଦୃତ କରାଇବାର କଷ୍ଟ ତତେ କ୍ରମାଗତ ଆଗେଇନେଲେ ।

ଆବିଳତାର ଗନ୍ଧ ନାହିଁ କି ବର୍ଣ୍ଣ ନାହିଁ । ଅଛି କେବଳ ଅନୁଭୂତିର ସ୍ୱର । ଏହି ପଙ୍କିଳ ଆବିଳତା ଯଦି ଚରିତ୍ର ଭିତରେ ବସା ବାନ୍ଧିନିଏ, ତେବେ ସେ କେତେ ଯେ ତଳିତଳାନ୍ତ କରି ପକାଇଥାନ୍ତା, ଜଣା ନାହିଁ । ଆବିଳତାମୁକ୍ତ, ସ୍ନେହସିକ୍ତ ଓ ପରୋପକାରୀ ମନର ଦୁର୍ଲଭ ହୋଇ କିଛି ରହି ନ ଥାନ୍ତା, କେବଳ ମୃତ୍ୟୁ ଛଡ଼ା, କାଳ ଜୟୀ ମୃତ୍ୟୁ ।

ସେ ବି ତତେ ବସାଇ ଲେଖାଇବାର ସୁବିଧା ଦେଲାନି । ଅନନ୍ତରେ ଲୀନ ହୋଇଯିବାର ସଠିକତାକୁ ପ୍ରଶ୍ନ ନ କରି ତୁ ନୀରବ ରହିଲୁ ! ଯନ୍ତ୍ରଣାଜନିତ ମର୍ମାନ୍ତିକ କଣ୍ଠରୁ ଉଦ୍ଧାର ପାଇବା ପାଇଁ ତୁ କହିଲୁ କା:ଭା: (କାଳିଆ ଭାଇନା) ମତେ ନେଇଯାଅ ସେହି ଗଙ୍ଗାକୂଳକୁ । କୌଣସି ସାଧୁଙ୍କ ଆଶୀର୍ବାଦରେ ଜୀବନ ଲାଭ କରିବା ପାଇଁ ନୁହେଁ ! ବରଂ ନିଜେ ନିଜକୁ ଝାସ ଦେବା ପାଇଁ । ମୃତ୍ୟୁ ଯଦି ଅନିବାର୍ଯ୍ୟ, ଏ ଅକଥନୀୟ ପୀଡ଼ାକୁ ସହ୍ୟକରି ବଞ୍ଚି ରହିବାର ଅର୍ଥ କ'ଣ ? ଆତ୍ମହତ୍ୟାର ପାପରୁ ମୁକ୍ତହେବା ?

ମୋର ରୋଗକ୍ଳିଷ୍ଟ କୃଶତନୁ ଗଙ୍ଗା ଭିତରେ ପଶୁ ପଶୁ ମରିଯାଇଥିବ । ସେଥିପାଇଁ ଚଳୁଏ ପାଣିର ମଧ ଆବଶ୍ୟକତା ନାହିଁ । ବ୍ୟସ୍ତ ହୁଅନି, କେହି ଜାଣିପାରିବେନି । ତମେ କହିବ ଜଣେ ସାଧୁଙ୍କ ପାଖକୁ ନେଇଯାଉଛି । ଯଦି ଭଲ ହୋଇଯାଇ ପାରେ । କେହି ଅବିଶ୍ୱାସ ମଧ କରିବେ ନାହିଁ ।

ଗଙ୍ଗାକୂଳରେ ମୁଁ ଓହ୍ଲାଉ ଓହ୍ଲାଉ କଇଁଛ ପରି ଚାରିଆଡ଼ରେ ସମସ୍ତ ଶକ୍ତି ଦେଇ ପାଣି ଭିତରେ ପଶିଯିବି । ତମେ କେବଳ ଦେଖିବ କେତୋଟି ପାଣିଫୋଟକା ଉପରକୁ ଉଠି ଫାଟିଯାଉଛନ୍ତି । ମୁଁ ଥିଲି ନିର୍ବାକ୍ । ଲୋତକର ଆବରଣରେ ତେବେ ବି ସ୍ପଷ୍ଟ ଦେଖିପାରୁ ନ ଥିଲି । ଯାହା ବା କହୁଥିଲି ବା କହିବାକୁ ଚେଷ୍ଟା କରୁଥିଲି, ସେସବୁ ମତେ ଅସ୍ପଷ୍ଟ ଥିଲା ।

ଭାବୁଥିଲି ମୃତ୍ୟୁର ବର୍ଣ୍ଣ କ'ଣ ? 'ନୀଳ' ନା ଘନକୃଷ୍ଣ ? ବିଲୟର ଧ୍ୱନି କଣ ? ନୂପୁରର ନିକ୍ୱଣ ନା ବିୟୋଗାନ୍ତକ ସଙ୍ଗୀତର ଶେଷ ଲହର ? ନିଷ୍କ୍ରାନ୍ତ ଅଶ୍ରୁର ସାନ୍ଦ୍ରତାକୁ ସନ୍ଦେହ କରି ଆବିଷ୍କାର କଲି ଅଶ୍ରୁର ମଧ ରୂପ ଅଛି । ସେଇଟା ହେଲା ରାତ୍ରିଶେଷର ପୋଡ଼ା ଜହ୍ନ ଭଳି ତୋର ସ୍ୱପ୍ନାୟତନ ମୁଖମଣ୍ଡଳରେ ଉଙ୍କୁଟିଉଠୁଥିବା ହୁତାଶିଆ ହସର ବକ୍ରରେଖା । ଯାହା ବାରମ୍ବାର ଦୃଶ୍ୟପଟଳରେ ବିକୃତ ହୋଇଯାଉଥିଲା ।

ତେଣୁ କିଭଳି ଶୈଶବର ଗନ୍ଧରୁ ସ୍ମୃତିର ରଙ୍ଗ ବୋଳି ଅନୁଭୂତିର ରୂପଗୁଡ଼ିକୁ ଜୀବନ୍ୟାସ ଦିଆଯିବ, ବୁଝିପାରୁନି । ରାସ୍ତାରେ ସବୁ ଅବରୋଧ ହୋଇଗଲା । ବେଦନାର ଭାଷାରେ ଏବଂ ଅଶ୍ରୁର ବିକୃତ ରୂପରେ ମୁଁ କ'ଣ ବା ସୃଷ୍ଟି କରିପାରିବି ? ଯେଉଁଥି ପାଇଁ ତୁହି କେବଳ ମତେ ମୁହୁର୍ମୁହୁ ମନେପକାଇ ଦେଉଥାଉ ।

ମୁଁ କାମନା ନ କରିବାର ତ ପ୍ରଶ୍ନ ଉଠୁନାହିଁ, କିନ୍ତୁ ତୋର ପରଜୀବନ କେତେ ଋଦ୍ଧିମନ୍ତ ଓ ରୁଚିପୂର୍ଣ୍ଣ ହେବ, ତାକୁ ଦୃଶ୍ୟପଟଳରେ ରୂପ ଦେଇ କହୁଛି, ହେ ଭଗବାନ ! ରୀଣାର ଆତ୍ମା ଆମ ବଳୟରୁ ମୁକ୍ତ କରି ପରଧାମରେ ଏଭଳି ବାନ୍ଧିରଖ, ତାର ପୁନର୍ଜନ୍ମରେ ସେ ହୋଇଉଠୁ ଗରିମାମୟୀ ଏ ଜନ୍ମଠୁ ବହୁଗୁଣରେ । ତାର ଆତ୍ମାର ଶାନ୍ତି ପାଇଁ ଭଗବାନଙ୍କ ପାଖରେ ମୁଁ ସମସ୍ତ ଭାଷା ଭାବ ଉତ୍ସର୍ଗ କରୁଛି ପ୍ରାର୍ଥନାର ପରିପ୍ରକାଶ ପାଇଁ ।

ଯେପରିକି—

ସର୍ବେ ଭବନ୍ତୁ ସୁଖିନଃ
ସର୍ବେ ସନ୍ତୁ ନିରାମୟାଃ,
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିତ୍ ଦୁଃଖଭାଗ୍ ଭବେତ୍ ।
ଓଁ ତତ୍ ସତ୍ ।

**କାଳିଆ ଭାଇନା**
ନୀଳମାଧବ ମିଶ୍ର
ସାମନ୍ତରାୟପୁର, ପ୍ଲଟ ନଂ-୩୧୦୩
ଭୁବନେଶ୍ୱର-୭୫୧୦୦୨

# ଅଭୁଲା ସ୍ମୃତି

ଜୀବନଟି ମୋର ଅନୁଭୂତିମୟ । ଅନେକ ଅଭୁଲା ସ୍ମୃତି ମୁଣ୍ଡ ଭିତରେ ଲିପିବଦ୍ଧ ହୋଇ ରହିଛି ; କିନ୍ତୁ କହିବାକୁ ଯେତେ ସହଜ ଲାଗେ, କଲମ କାଗଜରେ ପ୍ରକାଶ କରିବା ପାଇଁ ମୋର ଆଦୌ ଧୈର୍ଯ୍ୟ ନ ଥାଏ ; ତଥାପି ମୋର ଜୀବନର ସ୍ମୃତି ମଧ୍ୟରୁ ନାନୀ ସହିତ ମୋର ଆନ୍ତରିକତା ଓ ଆବେଗମୟ ସ୍ନେହ ଭିତରୁ କିଛିଟା ତାର ଦଶାହ ଉପଲକ୍ଷେ ପ୍ରକାଶ କରିବାକୁ ଯାଉଛି ।

୧୯୪୯ ମସିହା କଥା । ବର୍ତ୍ତମାନ ନୟାଗଡ଼ ପୁରୁଣା ଉ.ପ୍ରା.ବିଦ୍ୟାଳୟ ଆମ ସମୟରେ ନିମ୍ନପ୍ରାଥମିକ ବିଦ୍ୟାଳୟ ଥିଲା । ହେଡ଼ପଣ୍ଡିତ ମହାଶୟ ଦପ୍ତରି ସହିତ ସ୍କୁଲର ନାଁଲେଖା ଖାତା ଧରି ଆମ ଘର ସାମ୍ନା ଘରେ ବସିଲେ । ଗ୍ରୀଷ୍ମଛୁଟି ଯୋଗୁଁ ଭାଇମାନେ ସବୁ କଟକରେ ଥିଲେ । ଘରେ ବୋଉ, ପିଉସୀନାନୀ ଓ ନାନୀ ଥାଉ । ନାନୀ ମତେ ନେଇ ସ୍କୁଲ୍‌ରେ ନାଁ ଲେଖାଇଲା । ସେ ସେତେବେଳେ ସ୍କୁଲରେ ତୃତୀୟ ଶ୍ରେଣୀରେ ପଢୁଥିଲା । ବାଲ୍ୟାବସ୍ଥାରେ ସମସ୍ତ ପ୍ରକାର ଉତ୍ସାହ ପ୍ରେରଣା ଇତ୍ୟାଦି ନାନୀ ଠାରୁ ପାଇଥିଲି । ସ୍କୁଲ ଗଲେ ଆମେ ଦୁଇଜଣ ଏକାଠି ଯାଉ ଓ ସ୍କୁଲ ଯିବାକୁ ବହୁତ ଆଗ୍ରହ ଲାଗେ ।

ଏହିଭଳି ବର୍ଷେକାଳ ଉତ୍ସାହ ଉଦ୍ଦୀପନା ଭିତରେ ନାନୀର ମୋର ନିମ୍ନପ୍ରାଥମିକ ସ୍କୁଲଜୀବନ କଟିଯିବା ପରେ ସେ ୪ର୍ଥ ଶ୍ରେଣୀରେ ନୟାଗଡ଼ ବ୍ରଜେନ୍ଦ୍ର ହାଇସ୍କୁଲରେ ପଢ଼ିଲା ଓ ମୁଁ ଶିଶୁଶ୍ରେଣୀରୁ ପ୍ରଥମ ଶ୍ରେଣୀକୁ ଉନ୍ନୀତ ହେଲେ ମଧ୍ୟ ବାଲ୍ୟ-ଚପଳତା ଛାଡ଼ି ନ ଥାଏ । ମୋର ଅନ୍ୟ ୩ଜଣ ଭାଇ ଓ ନାନୀ ନୟାଗଡ଼ ହାଇସ୍କୁଲକୁ ଗଲାବେଳେ ମୁଁ ଜିଦ୍‌ଧରି ବସିଲି ନାନୀ ଯେଉଁଠି ପଢ଼ିବ ମୁଁ ସେଇଠି ପଢ଼ିବି । ମୁଁ ସ୍କୁଲ୍‌କୁ ଗଲାବେଳେ କନ୍ଦାକଟା ଓ ମାଡ଼ଗାଳି ଭିତରେ ଗତି କରି ଶେଷରେ ନାନୀ ମତେ ସ୍କୁଲରେ ବସାଇ ତାର ସ୍କୁଲକୁ ଯାଏ । ତେଣୁ ବାଲ୍ୟାବସ୍ଥା

ବି ସ୍ନେହ ମମତା ଆଦରରେ କଟାଇବା ପରେ ମୁଁ ଭାବି ପାରୁନାହିଁ, ସେ ପ୍ରକୃତରେ ମୋର ନାନୀ ନା ମାଆ ଥିଲା । ଦୁଷ୍ଟାମି କଲେ କେତେ ଯେ ସ୍ନେହମିଶା ଗାଳି ତା ଠାରୁ ନ ଖାଇଛି !

୧୯୫୦ ମସିହା କଥା । ବଡ଼ଭାଉଜ ପ୍ରଥମକରି ଘରକୁ ଆସିଥାଆନ୍ତି । ଘରଦ୍ୱାର ପରିଷ୍କାର-ପରିଚ୍ଛନ୍ନ କରିବା ଓ ଆମମାନଙ୍କୁ ବେଶଭୂଷା କରାଇ ସ୍କୁଲ୍‌କୁ ପଠାଇବାର ଦାୟିତ୍ୱ ଥିଲା ତାଙ୍କର । ସେତେବେଳେ ମୁଁ ଡୋରିଲଗା ହାପ୍‌ପ୍ୟାଣ୍ଟ ଓ ହାପ୍‌ସାର୍ଟ ପିନ୍ଧି ସ୍କୁଲକୁ ଯାଉଥାଏ । ସେ ଆସିବା ପରେ ପରେ ଡୋରିଲଗା ହାପ୍‌ପ୍ୟାଣ୍ଟ ଛାଡ଼ି ବୋତାମ ଲଗା ପ୍ୟାଣ୍ଟ ଓ ହାପ୍‌ସାର୍ଟ ପିନ୍ଧି, ପରେ ବକିମହାମ୍ କନାରେ ହାଓ୍ୱାଇ ପିନ୍ଧି ସ୍କୁଲକୁ ଗଲି । ନାନୀ ମୁଣ୍ଡ କୁଣ୍ଡେଇ ରିବନ ବାନ୍ଧି ରଙ୍ଗରଙ୍ଗି କନାର ଫ୍ରକ୍ ଓ ସାଲଓ୍ୱାର ପିନ୍ଧି ସେତେବେଳେ ଠିକ୍ ପ୍ରଜାପତି ଭଳି ଦିଶୁଥାଏ । ଆମ ପୁରୁଣା ଟାଉନ୍‌ରେ ଯେଉଁ ଅଳ୍ପସଂଖ୍ୟକ ଝିଅ ନୟାଗଡ଼ ବ୍ରଜେନ୍ଦ୍ର ହାଇସ୍କୁଲରେ ପଢୁଥିଲେ, ତା ଭିତରେ ମୋ ନାନୀ ଥିଲା ଜଣେ । କିଛି ବର୍ଷ ପରେ ମୁଁ ଓ ନାନୀ ଏକାଠି ମିଶି ନୟାଗଡ଼ ବ୍ରଜେନ୍ଦ୍ର ହାଇସ୍କୁଲରେ ପଢ଼ିବାର ସୁଯୋଗ ପାଇଲୁ । କିନ୍ତୁ ୩-୪ ବର୍ଷ ପରେ ସେ ୧୦ମ ଶ୍ରେଣୀ ପାସ୍‌କରି ମାଟ୍ରିକ୍ ପଢ଼ା ସୁଯୋଗରୁ ବଞ୍ଚିତ ହେଲା । ସେ ପଢ଼ିବା ପାଇଁ କେତେ ଯେ ଆଗ୍ରହୀ ନ ଥିଲା ! ଶେଷକୁ ତାର ଆଶା ଆକାଂକ୍ଷା ଧୂଳିସାତ୍ ହୋଇଗଲା ।

୧୯୫୭ ମସିହା ଖରାଛୁଟି । ମୋର ବ୍ରତଘର ଓ ନାନୀର ବାହାଘର କଟକ ଓ.ଏମ୍.ପି କ୍ୱାଟରରେ ବହୁତ ଜାକଜମକରେ ହେଉଥାଏ । ଆଲୋକ ସଜ୍ଜାରେ, ବନ୍ଧୁବାନ୍ଧବଙ୍କ ଗହଳିରେ ଓ ଭଦ୍ରଲୋକଙ୍କ ଯା'ଆସରେ ଓ.ଏମ୍.ପି. କ୍ୱାର୍ଟରଟି ଆନନ୍ଦ-ମୁଖରିତ ହୋଇପଡୁଥିଲା । ସେ ଘର ଓ ଜାଗାକୁ ମୁଁ ଏପର୍ଯ୍ୟନ୍ତ ଭୁଲିପାରୁ ନାହିଁ । କାର୍‌ରେ ଯେତେବେଳେ ନାନୀ ବାଙ୍କି ଗଲା, ମୁଁ ସେତେବେଳେ ତା ସହିତ ଯିବାର ସୁଯୋଗ ପାଇଥିଲି । ଆନନ୍ଦ ଉଦ୍ଦୀପନା ଭିତରେ ମୁଁ ଦୁଃଖ କଅଣ ବାଲ୍ୟାବସ୍ଥାରୁ ଜାଣିନାହିଁ । କିନ୍ତୁ ନାନୀ ଯେତେବେଳେ କାନ୍ଦୁଥିଲା, ମୋର ପୂରା ମନେପଡୁଛି, କଟକରୁ ବାଲିକୁଦା ନଦୀ ଭିତରେ କଚ୍ଚାରାସ୍ତା ପାର ହେବା ପର୍ଯ୍ୟନ୍ତ ଅବାରିତଭାବରେ ଆଖିରୁ ଝର ଝର ଲୁହ ବୋହୁଥାଏ ଓ ମୋର ମଧ ଆଖିରୁ କେତେ ଯେ ଲୁହ ନ ବୋହିଛି ! ବିଶ୍ୱନିୟନ୍ତାଙ୍କ ବୈଚିତ୍ର୍ୟମୟ ସୃଷ୍ଟିରେ ସେହି ଅଶ୍ରୁ ସେତେବେଳେ ମୋ ପାଇଁ ଆନନ୍ଦାଶ୍ରୁ ଥିଲା ନା ଶୋକାଶ୍ରୁ ଥିଲା, ମୁଁ ବୁଝିପାରିଲି ନାହିଁ ।

ସେତେବେଳର ଆନନ୍ଦାଶ୍ରୁ ମୋ ପାଇଁ ଏବେ ଶୋକାଶ୍ରୁରେ ପରିଣତ ହୋଇଛି ।

୮ ବର୍ଷ ପୂର୍ବେ ଭିଶୋଇ ବମ୍ବେ ମହାନଗରୀରେ କର୍କଟରୋଗରେ ଯେଉଁ ମୃତ୍ୟୁବରଣ କରିଥିଲେ, ସେତେବେଳେ ଆମେ ହତଭାଗ୍ୟ ପାଞ୍ଚଭାଇଯାକ କେତେ ଯେ ବ୍ୟସ୍ତ ନ ହୋଇଛୁ । ମୋର ନାନୀ କେତେ ଯେ ନ କାନ୍ଦିଛି । ଏପର୍ଯ୍ୟନ୍ତ ଏକାନ୍ତରେ ଭାବିଲେ ଅବାରିତ ଭାବରେ ଆଖିରୁ ଲୁହ ବୋହିଆସେ । ସେ ଦିନ ଆମମାନଙ୍କ ପାଇଁ ଦୁଃଖମୟ ଥିଲା । ସମସ୍ତ ସ୍ନେହଶ୍ରଦ୍ଧାକୁ ଜଳାଞ୍ଜଳି ଦେଇ ବମ୍ବେ ନଗରୀରେ ତାଙ୍କର ହସ ହସ ମୁହଁ ସୁପ୍ତ ଦେହକୁ ଚିରଦିନ ପାଇଁ ଛାଡ଼ି ଭୁବନେଶ୍ୱର ଫେରିଆସିଲୁ ।

ମୃତ୍ୟୁ ପରେ ନାନୀ ଏକାକୀ ତାର ନୂଆପଲ୍ଲୀ ଘରେ ରହି ଦୁଃଖକୁ ଭୁଲିବା ପାଇଁ ନିଜ ପ୍ରଚେଷ୍ଟାରେ କେତେ ଯେ ବହି ନ ଲେଖିଲା ! ସେ ଆମମାନଙ୍କୁ ଚିରଦିନ ଛାଡ଼ି ଚାଲିଗଲା ସତ, ମାତ୍ର ତାର ଲେଖାଗୁଡ଼ିକ ତାକୁ ଚିରଦିନ ପାଇଁ ଅମର ରଖିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଦୁଃଖକୁ ଲାଘବ କରିବା ପାଇଁ ଅନ୍ୟମାନଙ୍କୁ ନିଜର କରି ଅକୁଣ୍ଠିତ ସ୍ନେହଶ୍ରଦ୍ଧାରେ ସେ କେତେ ଯେ ପରକୁ ଆପଣାର କରି ନ ପାରିଛି ! ତାର ଦେହାନ୍ତ ପରେ ଲେଖକମାନଙ୍କର ସମାବେଶ ଏହାର ଜ୍ୱଳନ୍ତ ପ୍ରମାଣ । ମୁଁ ଜୀବନର ପ୍ରାୟ ଅଧେ ସମୟ ନାନୀ ପାଖରେ କଟାଇଛି, ମାତ୍ର ସଂସାରର ମାୟାଜାଲ ଓ ପରିବାରର ଜଞ୍ଜାଳ ଭିତରେ ଗତିକରି ସେହି ସ୍ନେହମୟୀ ନାନୀ ପାଖରେ ଗୋଟିଏ ରାତି ମଧ୍ୟ ରହିନାହିଁ । କର୍କଟରୋଗର ବିଭୀଷିକା ଦିନକୁ ଦିନ ବଢ଼ିବାରେ ଲାଗିଲା । ପେଟ ଓ ଛାତିର ଯନ୍ତ୍ରଣାରେ ଯେତେବେଳେ ସେ କଲବଲ ହେଉଥାଏ, ମୁଁ ମନେମନେ ଭାବେ, ହେ ଭଗବାନ ! ସମସ୍ତ ସ୍ନେହ-ମମତାର ପ୍ରତୀକ କଅଣ ତୁମର ଏହି ପରୀକ୍ଷା । ୪ଦିନ ଛୁଟି ନେଇ ମୁଁ ତା ପାଖରେ ବସିରହିଲି କେବଳ ଯନ୍ତ୍ରଣାର ଉପଶମ ପାଇଁ । ମୋ ହାତକୁ ନେଇ ସେ କେତେ ଯେ ତାର ଗାଲ ପାଟିରେ ଲଗାଇ ସ୍ନେହ ନ କରିଛି । ଯନ୍ତ୍ରଣାର ଉପଶମ ପାଇଁ ତାର ପିଠି ଅଣ୍ଟା ଗୋଡ଼ ଇତ୍ୟାଦିକୁ କେତେ ଯେ ନ ଆଉଁସିଛି । କିନ୍ତୁ ବାଲ୍ୟାବସ୍ଥା ଠାରୁ ଜୀବନର ଶେଷ ମୁହୂର୍ତ୍ତରେ ସ୍ନେହ ଭଗବାନ ଚିରଦିନ ସକାଶେ ଛଡ଼ାଇନେଲେ ।

କି ଦୁଃଖ ଏ ସଂସାର ! ନାନୀଲୋ ! ହସଖୁସି ଭିତରେ ଆମର ଦିନ କଟିଯାଇଛି । ତୋ ମୋ ଭିତରେ ଅନେକ ଅଭୁଲା ସ୍ମୃତି ଏ ପର୍ଯ୍ୟନ୍ତ ମୁଣ୍ଡ ଭିତରେ ଅଛି । ତା ଭିତରେ କିଛି ଅଂଶ ତୋ ପାଇଁ ଶୋକାକୁଳ ଅବସ୍ଥାରେ ଲେଖିଲି ଓ ଆଉ ଯାହା ସବୁ ମନ ଭିତରେ ରହିଗଲା, ଲେଖିବାକୁ ଧୈର୍ଯ୍ୟ

ନାହିଁ । ଅବାଧ ହେଲେ ପିଲାଦିନେ ମତେ ଯେଉଁ ସ୍ନେହମିଶା ଗାଳି ଦେଉଥିଲୁ, ଏବେ ୫୨ ବର୍ଷ ବୟସରେ ଠିକ୍ ପୂର୍ବଭଳି ଆକଟ କରିବାକୁ ଭୁଲି ନାହୁଁ ।

ତେଣୁ ବର୍ତ୍ତମାନ ଏହି ଦୁଃଖ ଦୈନ୍ୟ ଓ ନୈରାଶ୍ୟ ଭିତରେ କଅଣ ବା ଦେଇ ତତେ ସନ୍ତୁଷ୍ଟ କରିବି ? କେବଳ ଏତିକି ପ୍ରାର୍ଥନା, ତୁ ବଞ୍ଚିଥିବା ଭିତରେ ମତେ ଯେତିକି ସ୍ନେହ କରିଛୁ, ଏବେ ସ୍ୱର୍ଗଲୋକରେ ରହି ମୋ ପାଇଁ ଓ ମୋ ପରିବାର ପାଇଁ ସ୍ନେହ ଶ୍ରଦ୍ଧା ଓ ଆଶୀର୍ବାଦ ଦବୁ, ଏହାହିଁ ତୋର ଏକାଦଶାହ ଉପଲକ୍ଷେ ଏକାନ୍ତ ଭିକ୍ଷା ।

ଟିପ
ଇନ୍ଦ୍ରମାଧବ ମିଶ୍ର
ଆଇ.ସି.ସି. ଲିଃ, ଚୌଦ୍ୱାର

# ମୋ ସାଙ୍ଗ

ମୋର ବାହାଘର ସରିବା ପରେ ମୁଁ ଯାଇ ସୋନପୁରରେ ରହିଲି । ସେତେବେଳେ 'ମାଗି' ଥିଲେ ରାୟଗଡ଼ାରେ । ଆମର ହଠାତ୍ ଟୁର୍ ପଡ଼ିଲା ଟିଟିଲାଗଡ଼କୁ । ସେଠାରୁ ଆମେ ଗଲୁ ମାଗିଙ୍କ ଘରକୁ । ରୋଜୀ ଜନ୍ମ ହୋଇ ବର୍ଷକର ହୋଇ ଥାଆନ୍ତି । ମାଗି ଆମ ଦୁହିଁଙ୍କୁ ଦେଖିଲେ ଭୋ'ରୁ ଭୋ'ରୁ । ହସି ହସି ମତେ ଟାଣିନେଲେ ଘରଭିତରକୁ । ତାଙ୍କ ପାଖେ ଆନ୍ତରିକତା ଥିଲା ଖୁବ୍ । ଆମେ ଦୁହେଁ କଥା ହେଲୁ କେତେ କଣ । ସେ ହସି ହସି କହିଲେ— ଭାଉଜ, ତୁମେ ଯେଉଁ ନଣନ୍ଦ-ମୁଦି ଆଉ ନଣନ୍ଦ-ସୁଟ୍‌କେଶ ଦେଇଛନା, ମତେ ଖୁବ୍ ଭଲ ଲାଗିଲା । ଇଏ (ସତ୍ୟବାଦୀବାବୁ) ତ ସେଇ ସୁଟ୍‌କେଶଟାକୁ ତାଙ୍କ ଟୁର୍‌ବାକ୍ସ କରିଦେଇଛନ୍ତି । ଲଗିପଡ଼ିଲେ ରୋଷେଇରେ । ମୁଁ ନୂଆ ନୂଆ ରୋଷେଇ ଶିଖୁଥିଲି । ତାଙ୍କର ରୋଷେଇରେ ଏତେ ଜ୍ଞାନ ଓ ଏତେ ଶୀଘ୍ର ସିଏ ରୋଷେଇ ସାରି ଖାଇବାକୁ ଦେଇଦେଲେ ଯେ ମୁଁ ହତଚକିତ ହୋଇଗଲି । ସବୁଯାକ ଖାଇବାକୁ ସୁଆଦ ଲାଗୁଥିଲା । ବହୁତ ଥର ସେ ଯେତେବେଳେ ଆଚାର୍ଯ୍ୟ ବିହାରରେ ଥିଲେ, ଆମେ ସେଠାକୁ ବୁଲିଗଲେ ନ ଖୁଆଇ ସେ ଛାଡ଼ନ୍ତି ନାହିଁ । ସେତେବେଳେ ବୁଲିଯିବାକୁ କହିଲେ ଆମେ ମାଆ ପୁଅ ଝିଅ ଜାଣୁ ଯେ ମାଗିଙ୍କଘରକୁ ଯାଉଛୁ । ବହୁତଥର ବୁଲାବୁଲି କରି ଖାଇପିଇ ତାଙ୍କ ଘରୁ ଫେରିଛୁ । ଆଉ ସେ, ସତ୍ୟବାଦୀବାବୁ ପିଲାଙ୍କୁ ନେଇ ଆମଘରକୁ ଆସିଲେ ଖାଇ ପିଇ ଯାଆନ୍ତି । ମୋ ରୋଷେଇକୁ ଉଭୟେ ବହୁତ ତାରିଫ୍ କରନ୍ତି । ସତରେ ଏବେ ବି ଭାବିଲେ କାଲିପରି ଲାଗେ । ମାଂସକଷା ଖାଇ ସତ୍ୟବାଦୀବାବୁ ମାଗିଙ୍କୁ କହିଲେ— ଚାଖ କିମିତି ମାଂସକଷା ଭାଉଜ କରିଛନ୍ତି । ପାଟିରୁ ଛାଡୁ ନାହିଁ । ଉଭୟେ ବହୁତ ଦିନଯାଏ ସେଇ ମାଂସକଷାକୁ ମନେ ରଖିଥିଲେ ।

ତାଙ୍କର ଦେହ ଭୀଷଣ ଖରାପ ହେଲା ରୋଜୀଙ୍କ ବାହାଘର ପରେ ପରେ । ସେ କଟକ ଅଲ୍ଲୀ କ୍ଲିନିକ୍‌ରେ ଥାଆନ୍ତି । ସତ୍ୟବାଦୀବାବୁ ହାର୍ଟଆଟାକରେ S.C.B Medical College ରେ ଥାଆନ୍ତି । ଯାହାହେଉ, ମତେ ତାଙ୍କର

ସେବାକରିବାର ସୁବିଧା ମିଳିଥିଲା ସେତେବେଳେ ଟିକିଏ । ଏଇଟା ୧୯୮୩ ମସିହାର କଥା ।

ମାଗିଙ୍କର କ୍ୟାନ୍‌ସର ହୋଇଛି ବୋଲି କାଳିଆ କହିଲେ ଫ୍ରେବ୍ରୁଆରୀ ମାସରେ । ଶୁଣି ମୋର ରକ୍ତ ଶୁଖିଗଲା ଯେପରି । ମୋ ଅଜଣାତରେ ମୋ ଆଖିରୁ ଲୁହ ଝରିପଡ଼ିଲା । କ'ଣ କରିପାରିବି ମୁଁ ଅବା । ଭଗବାନଙ୍କୁ ଡାକିଲି ଖାଲି । ଶୀଘ୍ର ଭଲ ହୋଇଯାଆନ୍ତି । କିନ୍ତୁ ହାୟ, ସେ ଯେତେବେଳେ ମେ ମାସ ୧୦ ତାରିଖରେ ଉଡ଼ାଜାହାଜରୁ ହୁଇଲ-ଚେୟାରରେ ଆସିଲେ, ମୁଁ ହତଭମ୍ବ ହୋଇଯାଇଥିଲି । ତାଙ୍କୁ ଆଉଁସିପକାଇଲି ଟିକିଏ । ଶେଷବେଳକୁ ମୁଁ ଟିକିଏ 'ଦେଖିପାରିଲି ନାହିଁ । ମୋ ମଉସାଙ୍କ ମୃତ୍ୟୁଖବର ପାଇ ମୁଁ କାଳିଆଙ୍କ ସହିତ ବାରିପଦା ପଳେଇଥିଲି । ଆଉ ଠିକ୍ ସେତିକିବେଳେ ସେ ଆମକୁ ଠକିଦେଇ ଚାଲିଗଲେ । ଆମେ ଫେରିଲାବେଳକୁ ସବୁ ସରିଚି । ମୋ ମନର ଦୁଃଖ ସବୁଦିନ ପାଇଁ ରହିଗଲା । ଯାହାକୁ ମୁଁ ସର୍ବଦା ମୋର ବଡ଼ଭଉଣୀ ପରି ଅନ୍ତରଙ୍ଗ ସାଙ୍ଗପରି ଆଉ ସବୁଦୁଃଖ ଶୁଣାଇଦେବାରେ ସାଥୀଟିଏ ପରି ପାଇଥିଲି, ସେ ଆଜି ଚାଲିଗଲେ । ମୋ ମନର ବେଦନା ମୋ ମନରେ ରହିଗଲା । ମୁଁ କାନ୍ଦିପାରୁନି କି କିଛି କହିପାରୁନି । ଯିଏ ଯାହା କହୁଚି, ଶୁଣୁଚି ଖାଲି ।

ହେ ଭଗବାନ ! ତୁମ ପାଖେ ମୋର ମିନତି, ମାଗିଙ୍କ ଆତ୍ମାର ସଦ୍‌ଗତି ହେଉ । ଆଉ ତୁମେ ବେବି ନନ୍ଦୁ ରୋଜୀ ଓ ବାପିଙ୍କୁ ସହିବାର ସାହସ ଦିଅ ।

**ଲିଲି ଭାଉଜ**
ଅନୁରାଧା ମିଶ୍ର
ଡି—୧୦୮, ମ୍ୟୁଜିୟମ୍ ଫ୍ଲାଟ୍
ଭୁବନେଶ୍ୱର

# ସୁଧା– ସେ ଏକ ଅନନ୍ୟ ପ୍ରତିଭା

''ମାଗି''— ପ୍ରଥମେ ଯେତେବେଳେ ବାହାହୋଇ ଆସିଲି, ଏଇ ନାଁଟି ଶୁଣି ହସି ହସି ଗଡ଼ିଯାଇଥିଲି ଯେ ଏ କି ନାଁ ? କିନ୍ତୁ ପରେ ଯେତେବେଳେ ଏହାର ରହସ୍ୟ ଉନ୍ମୋଚିତ ହେଲା, ଜାଣିବାକୁ ପାଇଲି ଶାଶୁ ଆମର ଝିଅଟିଏ ପାଇବା ପାଇଁ ବହୁତ ଠାକୁରଙ୍କୁ ଡାକି ଡାକି ଆକୁଳ ନିବେଦନ ପରେ ଝିଅଟିଏ ପାଇଥିଲେ ଓ ତା'ର ଦୀର୍ଘ ନିରାମୟ ଜୀବନ କାମନା କରି ତାକୁ ସେଇ କରୁଣାମୟଙ୍କ ପାଖରେ ସମର୍ପଣ କରିଦେଇଥିଲେ । କିଛିଦିନ ପରେ ନିଜେ ପାଳିବାପାଇଁ ସେହି ଠାକୁରଙ୍କ ପାଖରୁ ଝିଅଟିକୁ ମାଗିକରି ଆଣିଥିଲେ ବୋଲି ତା ନାଁ ଦେଇଥିଲେ ''ମାଗି'' । ସେଇ ଝିଅଟି ଆଉ କେହି ନୁହେଁ, ସେ ଥିଲ ତୁମେ, ଯାହାର କି ଆହୁରି ଅନେକ ନାଁ ଥିଲା, ସୁଧା, ରୀଣା, ବାୟାଣୀ ଓ ଝିଅ ।

ଉପରେ ୪ ଭାଇ ଓ ତଳେ ଗୋଟିଏ ଭାଇ ଏମିତି ୫ ଭାଇରେ ଭଉଣୀ ଥିଲ ତୁମେ ସମସ୍ତଙ୍କର ଅତି ଅଲିଅଳୀ । ତୁମ ପରିବାର ସମ୍ପର୍କରେ ଯେଉଁମାନେ ଆସିଥିବେ, ସମସ୍ତେ ଏହା ଭଲଭାବେ ଜାଣିଥିବେ ଯେ ତଅପୋଇ ପରି ଯଦି ଆକାଶରୁ ଚାନ୍ଦ ଆଣିବାକୁ କହିବ, ସମସ୍ତେ ତିଆର ହୋଇଯାଉଥିଲେ ତାକୁ ତୋଳି ଆଣିବା ପାଇଁ । ''ସୁଧାଂଶୁ'' ଓ ''ମାଗି'' ନାଁ ସିନା ଥିଲା ଅନ୍ୟମାନଙ୍କ ପାଇଁ, କିନ୍ତୁ ଭାଇମାନେ ଡାକୁଥିଲେ ''ଝିଅ'' ବୋଲି । ବଡ଼ଭାଇଙ୍କ ପାଖରେ ଅଳି କରି କରି ଭାଇମାନଙ୍କ ପାଖରେ ଗେହ୍ଲେଇ ହୋଇ ବୋଉ ଓ ପିଇସୀନାନୀଙ୍କ ଉପରେ ହୁକୁମ ଜାହିର କରି କଟିଥିଲା ତୁମର ଶୈଶବ ।

ନୟାଗଡ଼ର ସବୁଜ ବନାନୀ ଘେରା ''ରୁଖିପାହାଡ଼''ର କୋଳରେ ଅବସ୍ଥିତ ବ୍ରାହ୍ମଣସାହିର ଦାଣ୍ଡରେ ଡେଇଁ ବୁଲି ତୁମେ ପାଦ ଦେଲ ଯୌବନରେ । ବିବାହ ବୟସ ହଉ ନ ହଉଣୁ ପ୍ରସ୍ତାବ ଆସିଗଲା ବିଭାଘର ପାଇଁ । ଇଞ୍ଜିନିୟର ଜ୍ୱାଇଁ, ରାଜପୁତ୍ର ପରି ଚେହେରା ଓ ଜମିଦାର ଘର ଆଉ ଅଧିକ କ'ଣ ଦରକାର ? ମୋ ''ବାୟାଣୀ'' ପାଇଁ ଏହା ଥିଲା ତୁମ ନନାଙ୍କର ଯୁକ୍ତି ତୁମ ବିଭାଘର ପାଇଁ । ତାକୁ କେହି କାଟିପାରିଲେ ନାହିଁ, ସାତଦିନ ତୁମ

ବୋଉ ରଷିକରି ଉପାସରେ ଶୋଇଥିଲେ ଏତେ ଶୀଘ୍ର ବିବାହ ନ ଦେବା ପାଇଁ, ତୁମେ ମଧ୍ୟ କବାଟ କିଳି ଘରେ ପଶିଥିଲ ଭାଉଜଙ୍କ ଉପରେ ଅଭିମାନ କରି । ସବୁ ବ୍ୟର୍ଥ ହେଲା । ବଡ଼ଭାଉଜ ତୁମକୁ ବୁଝାଇ ଦେଇଥିଲେ । ବଡ଼ ଭାଇନା (ଶ୍ରୀଯୁକ୍ତ ଦୁର୍ଗାମାଧବ ମିଶ୍ର) ସେତେବେଳେ ଆଇ.ପି.ଏସ୍. ଅଫିସର, କଟକର କମାଣ୍ଡାଣ୍ଟ ସାହେବ । ଏମିତି ଧୁମଧାମରେ ବାହାଘର କରିଥିଲେ ଅଳିଅଳୀ ଭଉଣୀର, ତାହା ବହୁତ ଦିନ ଯାଏଁ ଚର୍ଚ୍ଚାର ବିଷୟ ଥିଲା ଘରେ ଓ ବାହାରେ । ଆଉ ବଡ଼ଭାଉଜ ଯାହାର ତୁମେ ନଣନ୍ଦ ତ ନ ଥିଲ, ଥିଲ ବଡ଼ଝିଅ । ସେ ବାହାହୋଇ ଆସିବା ପରଠାରୁ କୌଣସି ମାନ୍ୟତା ବା ବୟସର ତାରତମ୍ୟ ନ ରଖି ତୁମ ସହିତ ନିଜକୁ ମିଶାଇ ଦେଇଥିଲେ ଗୋଟିଏ ଆତ୍ମାପରି, ତୁମକୁ ସଜାଇ ସାଜସରଞ୍ଜାମ ଦେଇ ବିଦା କରିଥିଲେ ଶଶୁର ଘରକୁ ।

ସ୍ୱାମୀ ରୂପେ ଯାହାକୁ ପାଇଥିଲ, ସ୍ୱର୍ଗତ ଶ୍ରୀଯୁକ୍ତ ସତ୍ୟବାଦୀ ପଣ୍ଡା, ସେ ମଧ୍ୟ ଥିଲେ ଗର୍ବ କରିବା ପରି ମଣିଷଟିଏ । ତୁମକୁ ଫୁଲଟିଏ ପରି ସର୍ବଦା ପାଖେ ପାଖେ ରଖି ଏତେ ଆପଣାର କରିନେଲେ ଯେ, ବାପଘରକୁ ଦିନଟିଏ ପାଇଁ ପଠାଇବା ମଧ୍ୟ ଥିଲା ତାଙ୍କ ପାଇଁ କଷ୍ଟକର । ତାଙ୍କରି, ନିର୍ଭୟ ଆଶ୍ରୟ ପାଇ ତୁମେ ମଧ୍ୟ ଅନ୍ୟ କୌଣସି କଥା ଭାବିବାର ସୁଯୋଗ ପାଇ ନ ଥିଲ । ସେ ଦିଗରୁ ମଧ୍ୟ ତୁମେ ଥିଲ ଅତ୍ୟନ୍ତ ସୁଖୀ । ତୁମର ଏଇ ହସଖୁସିର ଦୁନିଆକୁ ଯେଉଁମାନେ ସମୃଦ୍ଧ କରିଥିଲେ, ସେମାନେ ହେଲେ ବେବୀ, ନନ୍ଦା, ରୋଜୀ ଓ ବାପି । ଏକୁ ଆରେକ ବଳି । ପ୍ରତ୍ୟେକ ପିଲା ଭଲ ପଢୁଥିଲେ । ଏକମାତ୍ର ପୁଅ ତୁମ ନୟନତାରା—ସେ ମଧ୍ୟ ହେଲା ଇଉନିଭରସିଟି ଟପର୍ । ସେଦିନ ସ୍ୱାମୀ ଓ ସ୍ତ୍ରୀ ଦୁଇଜଣଯାକ ଆନନ୍ଦ ବିଭୋର ହୋଇ କରିପକାଇଥିଲ କେତେ କଳ୍ପନାଜଳ୍ପନା । ପୁଅ ଆଇ.ଏ.ଏସ୍. ହେବ । ପାଖରେ ରହିବ । ଶେଷ ଜୀବନ ମଧ୍ୟ ସୁଖରେ କଟିବ । ସେଥିରେ ମଧ୍ୟ ଥିଲା ତୁମର ବାଜିମାତ୍ । ହଠାତ୍ କ'ଣ ହେଲା କେଜାଣି ଭଗବାନ୍ ବୋଧେ ଏତେ ସୁଖ ସହିପାରିଲେନି । ହଠାତ୍ ଜୁଆରରେ ଭଙ୍ଗା ପଡ଼ିଗଲା । ସବୁ ହୋଇଗଲା ଶୂନ୍‌ଶାନ୍ । ଗୋଟିଏ ପକ୍ଷୀକୁ ଏକାକୀ ତଡ଼ପିବାକୁ ଛାଡ଼ିଦେଇ ଆର ପକ୍ଷୀଟି ଉଡ଼ିଗଲା ହଠାତ୍ ।

ତୁମେ ଥିଲ ଲେଖିକା । ସବୁ ଚରିତ୍ର ବିଷୟରେ ତୁମେ ଜାଣ, ଯାହା ଅନ୍ୟମାନେ ଜାଣି ନ ପାରନ୍ତି । ଏକଦା ତୁମ ଇଞ୍ଜିନିୟର ବନ୍ଧୁପତ୍ନୀମାନଙ୍କର ଈର୍ଷାର ପାତ୍ର ଥିଲ ତୁମେ, ତୁମର ସମଗ୍ର କୃତି ପାଇଁ । ତୁମେ ସେମିତି

ମୁଣ୍ଡ ଉଚ୍ଚା କରି ବଞ୍ଚିବାକୁ ଚାହିଁଲ । ଲେଖାଲେଖିରେ ମନ ଦେଲ ବହୁତ, ସାର୍ଥକ ସୃଷ୍ଟି କଲ, ଆହୁରି ଆଗକୁ ଆଗକୁ ମାଡ଼ିଚାଲିଲ । ତୁମ ଜୀବନରେ ଯେଉଁ ବିଶେଷ ଗୁଣର ଅଧିକାରୀ ଥିଲ, ତାହା ହେଉଛି ତୁମେ ହସିପାର ଓ ପ୍ରଚୁର ହସାଇ ବି ପାର । ପ୍ରତ୍ୟେକ ସଭାସମିତି, ବାହାଘର ଭୋଜି ଉତ୍ସବ ସବୁଠି ତୁମର ଉପସ୍ଥିତି ଥିଲା ସ୍ୱତନ୍ତ୍ର । ତୁମେ ନ ଥିଲେ ଆସର ଜମେନି, ଏହା ସମସ୍ତେ କହନ୍ତି, ତୁମେ ମଧ୍ୟ ଏହାକୁ ଜମାଇଦିଅ ହସି ହସି ମଉଜିଆ କଥା କହି ଓ ସମସ୍ତଙ୍କର ଚାଲିଚଳନର ଜୀବନ୍ତ ଅଭିନୟ କରି । ଏମିତିକି ଆମ ଘରେ ଆମେମାନେ ଯେତେବେଳେ ସମସ୍ତେ ଏକାଠି ହେଉ ଦଶହରା କିମ୍ବା ଅନ୍ୟ କେଉଁ ପର୍ବପର୍ବାଣୀରେ ଖାଇସାରିଲା ପରେ ଅଇଁଠା ହାତରେ ସମସ୍ତେ ଘଣ୍ଟା ଘଣ୍ଟା ବସି ତୁମ କଥାର କେରିକେଚର ମାଧ୍ୟମରେ, ଆନନ୍ଦ ନେଉ ଟିକିଏ ବିରକ୍ତ ନ ହୋଇ । ଚାହା ପିଇଲାବେଳେ ମଧ୍ୟ ଘଣ୍ଟା ଘଣ୍ଟା କଟିଯାଏ ଗୋଲଟେବୁଲ ପାଖରେ । ସମସ୍ତ ପରିବାରର କେନ୍ଦ୍ରବିନ୍ଦୁ ଥାଅ ତୁମେ । କେତେ ଆଲୋଚନା, କବିତା ଆବୃତ୍ତି ମଜାମଜା କଥା ସବୁ ଥାଏ ତାଆରି ଭିତରେ ।

ତୁମେ ବେଶି ପାଠ ପଢ଼ି ନ ଥିଲ ସତ କିନ୍ତୁ ତୁମେ ଥିଲ ବୁଦ୍ଧିମତୀ । ସବୁଥିରେ ତୁମର ଦଖଲ ଥିଲା । ସାହିତ୍ୟିକ ଛଡ଼ା ତୁମେ ଜଣେ ଭଲ ଦକ୍ଷ ସ୍ତ୍ରୀଲୋକ ଥିଲ । ଏଇଥିପାଇଁ ଯେ ଭଲ ରାନ୍ଧିପାରୁଥିଲ । ସ୍ୱେଟର ସିଲେଇଠାରୁ ଆରମ୍ଭ କରି ଏମ୍ବ୍ରୋୟଡ଼ୋରୀ ପର୍ଯ୍ୟନ୍ତ ସବୁ ସୂକ୍ଷ୍ମଭାବରେ କରିପାରୁଥିଲ' ସମସ୍ତଙ୍କ ସହିତ ଟକ୍‌କର ଦେଇ କଥା ହୋଇପାରୁଥିଲ, ଏମିତି ଅନେକ କିଛି । ସମସ୍ତେ ଥିଲେ ତୁମ ଆୟତ୍ତରେ, କେବଳ ରୋଗଟାକୁ ଯାହା ତୁମେ କବଳିତ କରିପାରି ନ ଥିଲ । ଘଣ୍ଟା ଘଣ୍ଟା ବସି ବହିପଢ଼ାରେ ବିତାଇ ଦେଇ ବହୁତ ସୁନ୍ଦର ସୁନ୍ଦର ଗପ, ଉପନ୍ୟାସ ଓ ନାଟକ ଲେଖିଛ । ହୁଏତ ତୁମ ଲେଖାର ତୁମ ପରିଶ୍ରମର ଉପଯୁକ୍ତ ପୁରସ୍କାର ତୁମେ ପାଇପାରିନ; ଯେଉଁଥିପାଇଁ ତୁମେ ସବୁବେଳେ ଅଭିମାନ ରଖୁଥିଲ । ଏହି ସ୍ୱାର୍ଥପର ଦୁନିଆରେ ସବୁକିଛି ଚାଲିଛି ସ୍ୱାର୍ଥରେ ଯାହାର କି କିଛି ଆକାର ପ୍ରକାର ନାହିଁ । ବୋଧେ ସେଇ ଅଭିମାନରେ ତୁମେ ଦେହତ୍ୟାଗ କଲ, ଏପରି ଦୁରାରୋଗ୍ୟ ରୋଗରେ ପୀଡ଼ିତ ହୋଇ । ମୁଁ ଜାଣିଛି, ସବୁବେଳେ ତୁମେ ଥିଲ ସୌନ୍ଦର୍ଯ୍ୟର ଉପାସକ । ଯେକୌଣସି ଅସୁନ୍ଦର ଜିନିଷକୁ ତୁମେ ଆଦୌ ସହ୍ୟ କରିପାରୁ ନ ଥିଲ । ତେଣୁ ତୁମକୁ ବାର୍ଦ୍ଧକ୍ୟ ସ୍ପର୍ଶ କରିବା ଆଗରୁ ତୁମ କଳାମଚମଚ ବାଳ ପାଚି ଶୁକ୍ଳବର୍ଣ୍ଣ ଧାରଣ କରିବା ଆଗରୁ ତୁମେ ଆମମାନଙ୍କ ପାଖରୁ ବିଦାୟ

ନେଇଗଲ ମାସ କେଇଟା ଡେ...ରେ ପଡ଼ି । ସେଦିନ ବିଦାୟବେଳାରେ ନୂଆ ଶାଢ଼ି ପିନ୍ଧି ବେକରେ ଫୁଲମାଳ ପକାଇ ମୁଣ୍ଡରେ ଚନ୍ଦନଟିପା ଲଗାଇ ସଜାଇ ଦେଇଥିଲା ତୁମ ବଡ଼ଝିଅ ବେବୀ । ନନ୍ଦୁ, ବାପି ଓ ରୀନା ଲାଗି ରହିଥିଲେ ଦେହର ଛାଇଟିଏ ପରି ପୁପୁନ, ମୁମୁନ, ସଲୋନୀ, ଶେରୀ ଓ ନିଶି କାହାରି ଆକର୍ଷଣ ତୁମକୁ ବାନ୍ଧି ରଖି ପାରିଲାନି । ତୁମେ ଶୋଇଯାଇଥିଲ ଚିରନିଦ୍ରାରେ, ଠିକ୍ ଗୋଟିଏ ନବବଧୂ ପରି ଦିଶୁଥିଲ । ସୁଧା ମ ! ସତରେ ଭାବିଲେ ବିଶ୍ୱାସ ହେଉନି ଯେ, ତୁମେ ଆଉ ଆମ ଗହଣରେ ନାହଁ । ତୁମର ଉପସ୍ଥିତି କେବେ ଆଉ ଆମେ ପାଇପାରିବୁନି, କିନ୍ତୁ ଏହା ସତ୍ୟ ଏବଂ ମଣିଷ ଗ୍ରହଣ କରିବାକୁ ବାଧ୍ୟ । ଯେଉଁଠି ବି ଥାଅ, ଶାନ୍ତିରେ ଥାଅ । ସେମିତି ହସୁଥାଅ ଓ ହସାଉ ବି ଥାଅ । ତୁମପାଇଁ ଏତିକି କାମନା ପରମେଶ୍ୱରଙ୍କ ପାଖରେ ।

**ବନି ଭାଉଜ**

ବନଲତା ମିଶ୍ର
ସାମନ୍ତରାପୁର
ପ୍ଲଟ୍ ନଂ. ୩୧୦୩
ଭୁବନେଶ୍ୱର - ୭୫୧ ୦୦୨

# ବୋଉ

ବୋଉ ଚାଲିଗଲା । ହଁ, ଚାଲିଯିବା ତ ଧ୍ରୁବ ସତ୍ୟ । ଏ ସଂସାରରୁ ଦିନେ ନା ଦିନେ ସମସ୍ତେ ଯିବେ । କିନ୍ତୁ ପରିଣତ ବୟସରେ ଗଲେ କାଳ ମୃତ୍ୟୁ ହେଲା ବୋଲି ମନରେ ଦୁଃଖ ଆସେ ସିନା, କ୍ଷୋଭ ଜାତ ହୁଏ ନାହିଁ । ବିଧିର ବିଧାନ ଉପରେ କ୍ଷୋଭ ହେଉଛି, କାରଣ ଏ ଥିଲା ଅକାଳ ମୃତ୍ୟୁ । ଏତେ ଶୀଘ୍ର ଚାଲିଯିବାର କି ପ୍ରୟୋଜନ ଥିଲା ? କିନ୍ତୁ ଏ ପ୍ରଶ୍ନ କାହାକୁ ବା ପଚରାଯାଇ ପାରିବ ? ଉତ୍ତର ଦେବାର ଯାହାର କ୍ଷମତା ଅଛି, ତାଙ୍କୁ କ'ଣ ଦେଖିହୁଏ ଯେ, ଉତ୍ତର ମିଳିପାରିବ ? ଭଗବାନଙ୍କର ଆମ ପ୍ରତି କାହିଁକି ଏ ଅନ୍ୟାୟ ବିଚାର ? ସତରେ ଯେ ବୋଉ ଆମମାନଙ୍କୁ ଛାଡ଼ି ଚାଲିଯାଇଛି, ଯେତେ ମନକୁ ବୁଝାଇଲେ ବି ମନ ବୁଝୁନି ।

ଫେବୃୟାରୀ ମାସରେ ମାଡ୍ରାସ୍ "ଆପୋଲୋ" ହସ୍‌ପିଟାଲ୍‌ରେ ଯେତେବେଳେ ଡାକ୍ତର କହିଲେ, "ଏ ରୋଗ ତ ଭଲ ହେବାର ନୁହଁ । ଖୁବ୍ ବେଶି ହେଲେ ଆଉ ୪ ମାସ ବଞ୍ଚିବେ ।" ସେତେବେଳେ ଜମା ବିଶ୍ୱାସ ହେଲା ନାହିଁ । ସତରେ କ'ଣ ଦେଖୁ ଦେଖୁ ବୋଉଟା ଆମକୁ ଛାଡ଼ି ଚାଲିଯିବ ! ସତ୍ୟକୁ ଆଖିମିଟିକା ମାରି ଆମେ ମାଡ୍ରାସରୁ ଫେରି ଆସିଲୁ । ବୋଉର ଇଚ୍ଛା, ସେ ଚିକିତ୍ସା ହେବନି, ସେମିତି ଚିକିତ୍ସାରେ କିଛି ଲାଭ ନାହିଁ, ଯେଉଁଥିରେ ଭଲ ହେବାର ଆଶା ବହୁତ କମ୍ । ସ୍ଥିର ହେଲା, ଆମେ କବିରାଜି ଚିକିତ୍ସା କରିବା, ଶେଷଦିନତକ ଆମେ ପିଲାମାନେ ସାଙ୍ଗ ହୋଇ ରହିବା । ଠାକୁରଙ୍କ ପାଖରେ ଅସୀମ ବିଶ୍ୱାସ, ସେ କେବେ ଆମ ପାଇଁ ଏତେ ନିର୍ଦ୍ଦୟ ହେବେ ନାହିଁ । ଏତେ ଶୀଘ୍ର (ମାତ୍ର ୫୪ ବର୍ଷ) ବାପା ଚାଲିଯାଇଥିଲେ । ବାପିର ବୟସ ସେତେବେଳକୁ ୨୧ ବର୍ଷ । ପାଠ ପଢୁଥିଲା । ଘର ନାହିଁ, ବୋଉକୁ କେତେ ବା ବୟସ । ତାକୁ ସମ୍ଭାଳିବ କିଏ ? ଆମେମାନେ ମିଳିମିଶି ମନରେ ଦମ୍ଭ ଧରିଲୁ । ବର୍ଷକ ଭିତରେ ବୋଉ ଘର ଖଣ୍ଡିଏ କରି ଏକାକୀ ରହିଲା । ତା' ମନ, ପିଲାଏ ତା' ଘରକୁ ଆସିବେ । ଏଠି ସେଠି ରହିଲେ ଝିଅମାନଙ୍କ ବାପଘର ପଡ଼ିଯିବ । ତେଣୁ ଯେତେ କଷ୍ଟ ହେଉ ପଛେ ସେ ଏକା ରହିବ ।

ଆମ ମନରେ ସବୁବେଳେ ଦୁଃଖ । ବୋଉ ଏକା ରହୁଛି, ଦେହ ଭଲ ରହୁନି । ପିଲାଙ୍କ ମନରେ କଷ୍ଟ ହେବ ବୋଲି ଯେତେବେଳେ ଫୋନ୍ କରି ପଚାରିଲେ ମିଛରେ କହେ, "ମୁଁ ଭଲ ଅଛି । ମୋ ପାଇଁ କେହି ବ୍ୟସ୍ତ ହେବ ନାହିଁ ।" ଆମେ ସତ କଥାଟା ଜାଣିଲେ ମଧ୍ୟ କିଛି କରିବାର ଉପାୟ ନାହିଁ । ମନରେ ଖାଲି ଏତିକି ସାନ୍ତ୍ୱନା ଥାଏ, ବୋଉ ତା'ର ସାଧନା ପଥରେ ଆଗେଇ ଚାଲିଛି । ଶୁଦ୍ଧପୂତ ଜୀବନ ଯାପନ କରି ତା'ର ମନରେ ଆତ୍ମବିଶ୍ୱାସ ଆସିଛି, ଭାଷା ପରିମାର୍ଜିତ ହୋଇଛି ଓ ଲେଖନୀ ସମୃଦ୍ଧ ହୋଇଛି । ଓଡ଼ିଶା ବାହାରେ ରହି ଖବରକାଗଜରେ ତା'ର ପୁସ୍ତକ ଉନ୍ମୋଚନ, ସଭା ସମିତିରେ ଭାଷଣ, ମାନପତ୍ର ଓ ସମ୍ମାନପ୍ରାପ୍ତି, ରେଡ୍‌କ୍ରସ୍ ଓ ଶିଶୁ କଲ୍ୟାଣ କାମରେ ଯୋଗଦାନ ଇତ୍ୟାଦି ଖବର ପଢ଼ିଲେ ଛାତି ଗର୍ବରେ କୁଣ୍ଢେମୋଟ ହୋଇଯାଏ । ସାଇପଡ଼ିଶା କେହି ଓଡ଼ିଆ ପଢ଼ି ନ ପାରିଲେ ମଧ୍ୟ ଖବରକାଗଜରେ ବାହାରିଥିବା ଫଟୋ ଦେଖାଇଲେ କେତେ ଆନନ୍ଦ ମିଳେ । ମନରେ ବିସ୍ମୟ ହୁଏ, ଅସୁସ୍ଥ ଶରୀରରେ ସେ କେମିତି ସାହିତ୍ୟ ସାଧନା କରିପାରୁଛି ? ମା' ସରସ୍ୱତୀ ତାଙ୍କୁ ସହାୟ ହୁଅନ୍ତୁ ।

ସବୁ ଜିନିଷର ଶେଷ ହେଲାପରି ବୋଉ ଜୀବନର ମଧ୍ୟ ଶେଷ ସମୟ ଆସିଗଲା । ପାଗଳ ପରି ଦିଲ୍ଲୀ, ସିମ୍‌ଲା ନେଇଗଲୁ ବୋଉକୁ, କାଳେ କିଏ ଭଲ କରିଦେବ । ମନେହୁଏ, ଭଗବାନ ନିଜେ ବୋଧେ ସହିପାରିଲେ ନାହିଁ । ଆହା ! କାହାର କ୍ରୂରଦୃଷ୍ଟି ପଡ଼ିଲା ବୋଉ ଉପରେ । କିଏ ନିର୍ମୂଳୀ ଲତାଟିଏ ବୋଉ ଦେହକୁ ଘୋପାଡ଼ିଦେଲା ? କି କାଳରୋଗ ଆସି ବୋଉକୁ ଅନ୍ତଃସାରଶୂନ୍ୟ କରିଦେଲା । ଜଗତଭକ୍ଷକ କାଳ ଆସି କେଉଁ ବାଟରେ ବୋଉକୁ ନେଇ ଚାଲିଗଲା । ଆମେ ଯେତେ ଚେଷ୍ଟା କରି ମଧ୍ୟ ଧରି ରଖି ପାରିଲୁନି । ଆଖି ଲୁହ ଶୁଖିଲା, ସବୁ ପ୍ରାର୍ଥନା ବ୍ୟର୍ଥ ହେଲା । ଠାକୁରଙ୍କୁ ବୋଧେ ଆମ ଡାକ ଶୁଭିଲା ନାହିଁ । ଆମରି କୋଳରେ ଆଖି ବୁଜିଦେଲା ବୋଉ । କଷ୍ଟ ନାହିଁ, ବିରକ୍ତି ନାହିଁ, ତା'ର ଶାନ୍ତ ମୁହଁଟି ସ୍ମିତହାସ୍ୟ କରି ବାପି କୋଳରେ ଶୋଇଗଲା । ଯେତେ ବୋଉ, ବୋଉ ଡାକିଲୁ, କିଛି ଉତ୍ତର ନାହିଁ । ସେ ଆରପାରିକୁ ଚାଲିଯାଇଥିଲା ।

ଆହା, ଭଗବାନ କେଡ଼େ ବେଗୀ ତାକୁ ଆମଠାରୁ ଛଡ଼ାଇ ନେଲେ । ଏତେ ସେବା ଶୁଶ୍ରୂଷା, ଉପବାସ, ରାତି ଅନିଦ୍ରା ସବୁ ବିଫଳ ହେଲା । ବୋଉ ଆଉ ୨/୪ ବର୍ଷ ହେଲେ ବଞ୍ଚିଯାଇଥାଆନ୍ତା ! ତା'ର ମନ ଥିଲା 'ଗଙ୍ଗା' ଉପନ୍ୟାସଟି ସାରିଦେଇ ଥାଆନ୍ତା । ପୁଅର ମଣିଷପଣିଆଟା ଦେଖି

ଯାଇଥାଆନ୍ତା । ବାପା ଯେଉଁ ୫୪ ବର୍ଷରେ ଯାଇଥିଲେ, ବୋଉ ବି ସେତିକି ବୟସରେ ଗଲା । ଭଗବାନଙ୍କର ଏତିକି କ୍ରୁର ବିଚାର ଆମ ପ୍ରତି ? କ'ଣ ବା ଆମର ଦୋଷ ! ଭଲମନ୍ଦରେ ପଚାରିଦେବାକୁ କେହି ନାହିଁ । ସୁଖ ଦୁଃଖରେ ଭାଗୀ ହେବାକୁ କେହି ନାହିଁ । ମୁଣ୍ଡ ଗୁଞ୍ଜି କୋଳରେ କାନ୍ଦିବାକୁ କେହି ନାହିଁ ।

ଟୀକା ଗୋବିନ୍ଦଚନ୍ଦ୍ରଙ୍କର ଗୀତ ପଦକ ମନେ ପଡ଼େ—

"ସେହି କାଳ ଯମ ବଡ଼ ଦାରୁଣରେ
ନ ଜାଣଇ ସୁଖ ଦୁଃଖ
ବାଛିନେବ କଞ୍ଚା, ରଖିବ ପାଚିଲା
ଦେବଟି ଦାରୁଣ ଦୁଃଖ ।"

କଥାରେ ଅଛି, ଯାହା ଆମମାନଙ୍କୁ ଭଲଲାଗେ, ତା' ଭଗବାନଙ୍କୁ ମଧ ପ୍ରିୟ । ତେଣୁ ସେ ନିଜ ପ୍ରିୟ ଲୋକମାନଙ୍କୁ ଶୀଘ୍ର ତାଙ୍କ ପାଖକୁ ନେଇଯାଆନ୍ତି ।

ଯଦି ସ୍ୱର୍ଗ ବୋଲି କିଛି ଥାଏ, ଯଦି ସତରେ ମୃତ୍ୟୁ ପରେ ନିଜର କର୍ମ ଅନୁସାରେ ମନୁଷ୍ୟ ସେହି ସ୍ୱର୍ଗକୁ ଯାଇପାରୁଥିବ, ତେବେ ବୋଉ ନିଶ୍ଚେ ସ୍ୱର୍ଗଗାମୀ ହୋଇଥିବ । ଖାଲି ଆମେମାନେ ହତଭାଗ୍ୟ । କାହାକୁ ଆଶ୍ରା କରି ଏ ଅବଶିଷ୍ଟ ଜୀବନ ଜୀଇ ରହିବୁ ? ଆଖିରୁ ଲୁହ ପୋଛିବାର ବୃଥା ପ୍ରୟାସ ଛଡ଼ା ଅନ୍ୟ ଉପାୟ କିଛି ନାହିଁ ।

ନନ୍ଦୁ
ଶ୍ରୀମତୀ ସଂଚିତା ମହାପାତ୍ର
ମାର୍ଫତ୍ : Wng. Cdr. ସତ୍ୟ ମହାପାତ୍ର
Quarter No. 862/1
New Project Colony
Jodhpur-342001
Rajasthan

# ଅବ୍ୟକ୍ତ ବେଦନା

''ଜାତସ୍ୟ ହି ଧ୍ରୁବୋ ମୃତ୍ୟୁଃ, ଧ୍ରୁବଂ ଜନ୍ମ ମୃତସ୍ୟ ଚ'' ।

ଏହି ନିୟମରେ ଜଗଦ୍‌ଭକ୍ଷକ କାଳ କାହିଁ କେତେ ମହାର୍ହ ପ୍ରତିଭା କେତେକାଳୁ ମହାପୁରୁଷଙ୍କୁ କବଳିତ କେତେକାଳୁ କରି ଚାଲିଛି, ତା'ର ଅବଧି ନାହିଁ । ପ୍ରିୟ ଅପ୍ରିୟ, ସାର ଅସାର ବିଚାର ତା'ର ନାହିଁ ।

କବିଙ୍କର ଦୃଷ୍ଟିରେ—

ବଡ଼ କ୍ରୁର କାଳ ବଡ଼ ଅବିଶ୍ୱାସୀ
ହାବୋଡ଼ି ଯିବ ସେ ଆଚମ୍ବିତେ ଆସି ।''

ମର ଶରୀର ଚାହୁଁ ଚାହୁଁ ଆଖି ପିଛୁଳାକେ ପୋଡ଼ି ପାଉଁଶ ହୋଇଗଲା । କାଳର ଅତଳ ଗର୍ଭରେ ଲୀନ ହୋଇଗଲା ।

ବିଧିର ଅଭ୍ରାନ୍ତ ଓ ଅଲଙ୍ଘନୀୟ ନିୟମ । ଜଗଦ୍‌ଭକ୍ଷକ କାଳ ମାଟିପିଣ୍ଡଟାକୁ ଅକାମୀ କରି ପୋଡ଼ି ପାଉଁଶ କରିଦେଇ ଉଦରସାତ୍ କରିସାରିବା ପରେ ବି ଯେଉଁମାନେ ତୁହାକୁ ତୁହା ଜନମାନସରେ ତାଙ୍କର ଅମ୍ଳାନ ପ୍ରତିଭା ଯୋଗୁଁ ଜ୍ୟୋତିଷ୍କ ସଦୃଶ ଝଟକୁଥାନ୍ତି, ଦିବ୍ୟ ପ୍ରେରଣାର ଉତ୍ସ ହୋଇଥାନ୍ତି, କାଳ ସେମାନଙ୍କ ପାଖରେ ହାର ମାନେ । ସେମାନେ କାଳଜୟୀ, ମରି ବି ମରି ନାହାନ୍ତି ।

ସେଇଭଳି ବୋଉ ଶେଷ ପର୍ଯ୍ୟନ୍ତ ତାଙ୍କର କର୍ତ୍ତବ୍ୟ କରିଆସୁଥିଲେ । ସବୁଦିନ ଭଳି ସେଦିନ ସେ ଭୋର୍‌ରୁ ଉଠିଥିଲେ । ସକାଳୁ ତାଙ୍କର ମୁଣ୍ଡ କୁଣ୍ଡାଇ ପରିଷ୍କାର ହୋଇ କେତେ କଥା ଗପିଥିଲେ । ସେଦିନ ମଧ୍ୟ ଘରେ କ'ଣ ରୋଷାଇ ହେବାଠାରୁ ଆରମ୍ଭ କରି ତାଙ୍କର ଅସମ୍ପୂର୍ଣ୍ଣ ଉପନ୍ୟାସ 'ଗଙ୍ଗା'ର ସମାପ୍ତି କ'ଣ ହେବ, ତାହା ବି କହିଥିଲେ । ମୁଁ ଆଗରୁ ଶୁଣିଥିଲି ସେ ଜମା କଷ୍ଟ ସହିପାରନ୍ତିନି । ମାତ୍ର ମୋ ନିଜ ଆଖିରେ ଦେଖିଲି, ତାଙ୍କର ନିଜର ଶାରୀରିକ କଷ୍ଟ ପାଇଁ ଟିକେ ହେଲେ ଦୁଃଖ ନ ଥିଲା, ସେ ବରଂ ହସି ହସି ସବୁବେଳେ କହିଛନ୍ତି—''ଶରୀର ଅଛି ଯେତେବେଳେ ଆଉ କ'ଣ ଟିକେ କଷ୍ଟ ହେବନି ? ସେଥିପାଇଁ ଜମା ବ୍ୟସ୍ତ ହୁଅନି ।'' ତାଙ୍କର ସେହି

ମନୋବଳରେ ସେ ଶେଷପର୍ଯ୍ୟନ୍ତ ଶରୀର-କଷ୍ଟକୁ ଭ୍ରୂକ୍ଷେପ ନ କରି ମା ସରସ୍ୱତୀଙ୍କ କୃପାର ବିନ୍ଦୁରେ ବିନ୍ଦୁ ମିଶାଉଥି ।

ତାଙ୍କର ସେହି ଶେଷ ପଦଟି ଭାବିଲାବେଳକୁ ଛାତି ଭିତରଟା ଦାଉଁକିନା ହୋଇଯାଉଛି— "ମା ପରଦାଟା ପକାଇଦେ" । ସତରେ କ'ଣ ସେ ଆମ ସମସ୍ତଙ୍କ ଆଗରେ ଆଖିମିଟିକା ମାରି ପରଦା ଆଢୁଆଳରେ ଲୁଚିଗଲେ !

ଇଏ ମଧ୍ୟ ସବୁଦିନ ଭଳି ବୋଉଙ୍କୁ କୁଣ୍ଢାଇଧରି ବାରମ୍ବାର ପଚାରୁଥାନ୍ତି— "ବୋଉ, କ'ଣ ହେଉଛି କିଲୋ ? ବହୁତ କଷ୍ଟ ହେଉଛି କି ? ବୋଉଙ୍କୁ ଯେତେ କଷ୍ଟ ହେଲେ ବି ଥରଟିଏ ହେଲେ କହନ୍ତି— 'ହଁ ରେ ପୁଅ, ଭାରି କଷ୍ଟ ହେଉଛି ।" ମାତ୍ର ସେଦିନ ତାଙ୍କ ପାଟିରୁ ପୁଅ ଡାକ ନ ଶୁଣି ସେ ପାଗଳ ଭଳି ଖାଲି 'ବୋଉ' 'ବୋଉ' ଚିତ୍କାର କରୁଥାନ୍ତି ! ମାତ୍ର ମୃତ୍ୟୁର କରାଳ ଗ୍ରାସ ସେତେବେଳକୁ ବୋଉଙ୍କ ହାତ-ପାଦକୁ ଶିଥିଳ କରି ସାରିଲାଣି । ମୋ ହାତର ଅକ୍ସିଜେନ୍ ମାସ୍କରୁ ଅକ୍ସିଜେନ୍ କ୍ରମାଗତଭାବରେ ନାକବାଟେ ଯାଇ ପାଟିବାଟେ ପାଣି ହୋଇ ବାହାରିଲାଣି । ନନ୍ଦୁନାନୀଙ୍କ ହାତତଳ ମୁଣ୍ଡର ଶିର ସବୁ ଧକ୍ ଧକ୍ ହେବା ବନ୍ଦ ହୋଇଗଲାଣି । ଏ କ'ଣ ହେଲା— କେହି ବି ବୁଝିପାରିଲେନି । ମୃତ୍ୟୁଟା ସତରେ ଏତେ ସତ୍ୟ, ଏତେ ଶୀତଳ, ଏତେ ଚଞ୍ଚଳ, ମୋ ନିଜ ଆଖିରେ ଦେଖି ବିଶ୍ୱାସ କରି ବି ମୁଁ ବିଶ୍ୱାସ କରିପାରୁ ନ ଥିଲି । ତା' ଆଗରେ ଆମେ ସମସ୍ତେ ହାର ମାନିଲୁ ।

ରାତିରେ ବହୁତ ଲୋକ ଘରକୁ ଆସିଲେ, ମାତ୍ର ବୋଉ ଆଉ ହସୁ ନ ଥିଲେ କି ମୋତେ ଗାଳିଦେଇ କହୁ ନ ଥିଲେ— "ଏଠି ବସି କ'ଣ କରୁଛୁ ? ଯା ତାଙ୍କ ପାଇଁ କ'ଣ ଖାଇବାକୁ ଆଣ ।" କେତେ ଶାନ୍ତିରେ ସେ ଶୋଇପଡ଼ିଥିଲେ । ଯିଏ ଯେତେ କାନ୍ଦିଲେ ବି ଶୁଣୁ ନ ଥିଲେ । ବଡ଼ମାଇଁ ପାଖରେ ବସି ଯେତେ ମୁଣ୍ଡ ଆଉଁସିଲେ ବି ଥରେ କହୁ ନ ଥିଲେ, "ଭାଉଜ, ଭଲ ଲାଗୁଛି" ବୋଲି । ବେବୀନାନୀ, ବିଜୟଭାଇନା ଭଦ୍ରକରୁ ଏତେ କଷ୍ଟରେ ରାତିରେ ଦୌଡ଼ି ଆସିଲେ ବି ଥରେ ହେଲେ ପଚାରିଲେନି "ମା, ତୁ କେମିତି ଆସିଲୁ" । ତାଙ୍କର ଚିର ବିଦାୟରେ ଆକାଶ ବି ଫାଟିପଡୁଥିଲା । ତା'ର ଘନ ଘନ ବର୍ଷାର ଲୋତକଧାର ଅବିଶ୍ରାନ୍ତ ବର୍ଷୁଥିଲା । ବାଡ଼ିର ତାଙ୍କ ହାତଲଗା ବଡ଼ ଝାମ୍ପୁଡ଼ା କଲରାଗଛଟା ସେଇ ମୁହୂର୍ତ୍ତରେ ପୋଡ଼ିଜଳି ବସୁଧାରେ ମିଶିଗଲା । ସତରେ କି ନିଷ୍ଠୁର ଏ କାଳ ।

ବୋଉ କେବେହେଲେ ଶାଶୁହିସାବରେ ହୁକୁମାତି କରିନାହାନ୍ତି, ବରଂ ଶଶୁର ନାହାନ୍ତି ବୋଲି ମୋତେ ଦୁଇଜଣଙ୍କର ସ୍ନେହ ଦେଇଥିଲେ । ତାଙ୍କ ପାଖରେ ମୁଁ ଅଳ୍ପଦିନ ରହିଲେ ବି ବହୁତ କଥା ଶିଖିଚି । ରୋଷାଇଠାରୁ ଆରମ୍ଭ କରି କବିତା ପାଠୋତ୍ସବ ପର୍ଯ୍ୟନ୍ତ ସବୁ ବିଷୟରେ କହନ୍ତି । ସେ ସବୁବେଳେ କର୍ମ ଉପରେ ବିଶ୍ୱାସ କରୁଥିଲେ । ଯାହା ପାଖରେ ଭଲଗୁଣ ଦେଖୁଥିଲେ, ସେ ତାଙ୍କୁ ପ୍ରାଣଠାରୁ ବି ଅଧିକ ଭଲ ପାଉଥିଲେ । ଆଜି ଭଳି ମନେପଡୁଛି, ସେ ଏଇ ଡ୍ରଇଂ ରୁମ୍ ସୋଫାରେ ବସି 'ଗଙ୍ଗା' ଉପନ୍ୟାସ ମୋତେ ଶୁଣାଉଥିଲେ । ସତରେ କି ଚମତ୍କାର ଭାଷା, କି ଭାବ, ସବୁଠାରୁ ବେଶୀ ହୃଦୟସ୍ପର୍ଶ କରୁଥିଲା ତାଙ୍କର ସେହି ହସି ହସି କହିବା ଶୈଳୀ... ।

ଦୁନିଆ ଆଖିରେ ଯେତେ ବିଦାୟ ନେଲେ ବି ସେ ମୋ ପାଖରେ ସବୁଦିନ ଯେମିତି ଥିଲେ, ସେମିତି ରହି ଭଲ ବାଟ ଦେଖାଉଥିବେ । ସେ ଶେଷ ପର୍ଯ୍ୟନ୍ତ ଆମମାନଙ୍କୁ ଖୁସି କରିବା ପାଇଁ ଡାକ୍ତରଙ୍କ କଥା ମାନି କହିଥିଲେ — କଟକ ଫୋନ୍ କରି କୁହ, ପୀତାମ୍ବରବାବୁ ଭଲ କମଳା, ସପୁରୀ ଆଦି ଆଣିବେ । ମାତ୍ର ତାଙ୍କର ଚିନ୍ତାଧାରା ଆମଠାରୁ ବହୁ ଉର୍ଦ୍ଧ୍ୱରେ ଥିଲା । ବାପାଙ୍କୁ ଦେଖିଲେ ସେ ତାଙ୍କର ସଦ୍ୟପ୍ରକାଶିତ ''ପ୍ରାଣ ଓ ପ୍ରଣୟ'' ଗଳ୍ପସଙ୍କଳନ ବିଷୟରେ କିଛି କଥା ହେବେ । ସେ ବୋଧହୁଏ ଭଗବାନଙ୍କ ସାଙ୍ଗରେ ଲୀନ ହେବେ ବୋଲି ଆଗରୁ ଜାଣି ବଡ଼ବାପା (ଦିବାକର ମିଶ୍ର)ଙ୍କୁ ଡାକି ତାଙ୍କର ''ଜୟ ମାଧବ ମଦନ ମୁରାରି ରାଧେ'' କୀର୍ତ୍ତନ ସହ ତାଳ ମିଶାଇ ହସି ହସି ଗାଉଥିଲେ ଓ ସେଥିରେ ମଜ୍ଜିଯାଉଥିଲେ । ସତରେ କି ସୁନ୍ଦର ଲାଗୁଥିଲା ସେ ପରିବେଶ ! କି ସ୍ୱର୍ଗୀୟ ସୁଖ ତାଙ୍କୁ ମିଳୁଥିଲା । ସତରେ ମଧ୍ୟ ସେୟା ହେଲା । ବଡ଼ଦାଣ୍ଡରେ ରଥ ଉପରେ ତିନିଠାକୁର ଅଛନ୍ତି । ବୋଉଙ୍କ ଗାଡ଼ିଟା ବଡ଼ଦାଣ୍ଡ ଡେଇଁ ସ୍ୱର୍ଗଦ୍ୱାରକୁ ଚାଲିଛି । ତିନିଠାକୁର ଓ ବୋଉ ଦାରୁମୂର୍ତ୍ତି ଭଳି ଚୁପ୍‌ଚାପ୍ ବସି ହସୁଛନ୍ତି ।

ବୋଉ, ଆପଣଙ୍କର ଗଳ୍ପ ଉପନ୍ୟାସ ଆଦିର ନାମକରଣ ମତେ ଖୁବ୍ ଭଲଲାଗେ । ତା' ମଧ୍ୟରୁ ସବୁଠାରୁ ମର୍ମସ୍ପର୍ଶୀ ଥିଲା ଆପଣଙ୍କ ଉପନ୍ୟାସ ''ଅବ୍ୟକ୍ତ ବେଦନା ।'' ଆଜି ଆପଣଙ୍କ ବିନା ମୁଁ ଯେଉଁ ବେଦନା ଉପଲବ୍ଧି କରୁଛି, ତାହାହିଁ ମୋ ପାଇଁ ଅବ୍ୟକ୍ତ ।

**ବୋହୂ**
ସୁନନ୍ଦା ମିଶ୍ର ପଣ୍ଡା

# —Bitter Realities—

"Life is a sad affair and we often make it sadder." I could understand its meaning when my uncle wrote this in the memory of my late father. But there was a big doubt — why 'often' ? Today there is still a doubt; only the question has changed — can it be so often ?

Born as the only son after three daughters in a family with no one from the paternal side and five maternal uncles (my mother was the only sister) I was supposed to be the most pampered and protected child. But that was not the case. I had grown up innocent at the same time sincere. At the time of my father's expiry I was inexperienced, completely unexposed to this materialistic world. But, the sincerity and dutifulness that was imbedded to me by my father helped me in composing myself and taking firm decisions. I accepted every responsibility that came my way and finished all the unfinished work of my father. My life's only ambition was to keep my mother happy with her literary circle and status. We shifted to our new house in 1989 and there was none between us. We were just two. She was my mother, my friend, my inspiration, my goal.... My studies at Delhi, my career management, my ambition, everything centred around her. She had dedicated all her time to her literary activities and she was excelling. I got married to Reena, her choice, and spent a little more time at Delhi as both of us had to complete our respective Ph.D. thesis. When I submitted my thesis, I quit my job at Delhi and came back to Bhubaneswar to my mother in December '94. In between I was blessed with a daughter and all three of us were really happy.

But alas, this happiness could not last long. On 6th of February this year I saw the deadly smile of destiny for the second time. Everything was over in just four months. I was left alone in this world fatherless, motherless. Bou, this is not fair. Both of us had béen experiencing acute loneliness after Bapa's expiry. But you betrayed me. How can I tolerate your absence ? Before whom shall I express my feelings ?

Now I am facing so many 'whys'. Why all these mishaps in my life ? And why so early ? But most important— why should after all Bou expire ? Her death is not just a loss for me,it is a real loss for the society. She was a creative genius. I think probably she was the only Oriya female writer who had written short-stories, novels, poems, lyrics, plays, drama and articles. She was a critic and a good orator. Her contributions have enriched the Oriya Literature. Why such a glazing star demise so early ?

When my uncle asked me to write something on her memory, I thought what could I write. There is nothing to memorise. She is in my blood, her every movement is running down my veins. How can I express that ? To write something for her that too in Oriya I thought would be sheer impudence. Even though I am not good at English, I opted for that. Bou, bless me, I should be able to write something, at least a para, someday in Oriya just like you.

Bou, after Bapa's expiry you always used to sing that famous song of "Mother India"—

"Dooniyame hum aaye hain to jeena hi padega
Jeevan bhi agar jahar to peena hi padega."

[Since we have come to this world we have to live,
And if life is poison we have to swallow it.]

I remember this. I have experienced the hard realities of life. The void created in my life without you two will always be there.

Great people say there is always sunrise after a sunset; light after darkness and hapiness after sorrow. But I know, for me there will be no sunrise again. Of late, I am able to realise "The Psalm of Life" (the poem written by H.W. Longfellow taught to us in our school days) and strongly depending on its lines —

"Trust not future, however pleasant
Let the dead past bury its dead
Act, act in living present
Heart within and God overhead."

**Bapi(son)**

# A letter to my darling Aai

My dearest darling Aai,

I love you very much, so much that it is difficult to express it. You were one of the best Aai's in the world. I love you dearly.

Your every word that you told me are still in my mind and will remain forever.

I still remember when I used to come back from school you would serve and serve until we were full.

I remember that one day when I was going to have a bath you told me—"See your feet, it's so dirty", and saying that you took me to the bathroom and washed my feet so reality that I could even see my face.

Aai, you had written many books and one of the name of the book was after my name—'ସଲୋନୀ', I couldn't understand you had 5 grand children and you had named all of them. Then why did you write a book after my name ? This shows that you loved me dearly and I love you as much you do to me.

Dearest Aai, I really, truly miss you very much. I hope you would stay and accompany me as I always enjoy your company with me. "Oh dear Aai, even if you are not present in this world, you will be in my heart for ever and ever."

Yours loving grand daughter
SALONI

# Aai

The sudden demise of my Aai is a big setback, not only to my mother, but also to all of us in the family. There is a saying that— 'No one lives in this universe for ever.' Truly, Aai has left all of us for the heavenly abode, but her creative contributions to enrich Oriya literature shall keep her alive for ever. I had the splendid opportunity to spend few memorable days with my Aai during my parents stay at N1/A-5, Nayapalli.

During those days, I have received enough encouragement and inspiration from Aai to write poems and short stories. Today, I am feeling the absence of my dear Aai, but I feel probably God has taken her to His Kingdom to enrich the literary activities there.

Pupun
Grand son

# ଶେଷ ଚିଠି....

ମଞ୍ଜୁଘର — ଦିଲ୍ଲୀ
ରାତି ତିନିଟା
୧୯୯୫ ଜୁନ୍ - ୧୦ ତାରିଖ

ସ୍ନେହର ବାପି,

ମଣିଷ ଏ ଧରାକୁ ଆସିଥାଏ, ପୁଣି ଚାଲିଯାଏ । ଛାଡ଼ିଯାଏ ତା'ର ସ୍ମୃତି କେବଳ । ସେ ସ୍ମୃତି ଟିକକ ବି ମୋ ପାଖରେ ନାହିଁ ଛାଡ଼ି ଯିବାପାଇଁ । ବରଂ ତୁ ମତେ ଅନେକ ସ୍ମୃତି ଦେଇଛୁ । ଯାହା ସାଙ୍ଗରେ ନେଇ ଯାଉଛି ମୁଁ । ମତେ ବହୁତ ଭଲ ପାଇଛୁ । ଗେହ୍ଲା କରିଛୁ । ମାଆ ହୋଇ ତୋ'ଠାରୁ କଣ୍ଟେଇଟିଏର ସ୍ନେହ ପାଇଛି ।

'ତୁ ଯାହା ଚାହିଁଛୁ, ତା' କରିଛୁ । ବାପା ଚାଲିଗଲେ, ମୁଁ ଚାଲିଯାଉଛି ବୋଲି ଜମା ମନଦୁଃଖ କରିବୁ ନାହିଁ କି ଆମକୁ ଭୁଲ ବୁଝିବୁ ନାହିଁ । ତୋର ଏକ ମାତ୍ର ଆଶା ଥିଲା Ph.D. କରିବୁ ବୋଲି । କଲୁ । ଚାକିରି ହୋଇଯିବ । ଆଉ ତୋର ସୁଖ ଦେଖିବ କ'ଣ ? ତୁ ସୁଖୀ ହେଲେ ମୋର ତ ସେଥିରେ ଆନନ୍ଦ । ତେଣୁ ମନଦୁଃଖ କରିବୁ ନାହିଁ ।

କ୍ୟାନ୍ସରର ପ୍ରକୋପରେ ଦେହ ମୁଣ୍ଡ ସବୁ ଅବଶ ହୋଇଗଲାଣି । ଖାଲି ମାଆ ସରସ୍ୱତୀଙ୍କ କୃପାରୁ କଲମ ଧରିପାରୁଛି । କେତେ କ'ଣ ଲେଖିବା ପାଇଁ ମନ ବିକଳ ହେଉଛି, ତଥାପି ଲେଖି ହଉନି । ବଡ଼ ଦୁର୍ବଳ ବାପି... ବଡ଼ ଦୁର୍ବଳ । ପ୍ରତି ମୁହୂର୍ତ୍ତରେ ଭାବୁଛି, ଏଇଲେ ପ୍ରାଣବାୟୁ ଉଡ଼ିଯିବ । ମାତ୍ର ତା'ର ସମୟ ଆସିନି ବୋଲି ଉଡ଼ିଯାଉନି ।

ତଥାପି ଚୁମ୍ବକରେ ତତେ ସୂଚେଇଦଉଛି । ମୁଁ ତ ମରିବି । ଶୁଦ୍ଧିକ୍ରିୟା ପାଇଁ ଉପବାସ ରହି ଗୁଡ଼େ ପ୍ରେତାୟ ନମଃ, ପ୍ରେତାୟ ନମଃ ହବୁନି । ତୋ ପାଇଁ ମୁଁ କେବେ ପ୍ରେତ ହେବି ନାହିଁ । ମୋ ଲାଗି ଦୁଃଖ ପାଇବୁ ନାହିଁ । ନବମରେ କ୍ରିୟା ଧରି ଦଶମରେ ପକାଇଦେବୁ । ମନଦୁଃଖ କରିବ ନାହିଁ । ଭଲ ଅଭଡ଼ା ଆଣି ଖାଇବ ।

ଏଗାର ଦିନ ମୋର ଲେଖକ-ଲେଖିକା ବନ୍ଧୁମାନଙ୍କୁ, ସ୍ନେହୀ ଆତ୍ମୀୟଙ୍କୁ ଡାକି ଖାଇବାକୁ ଦେବୁ ।

ଦିନଠାରୁ ଯିଏ ଯେତେବେଳେ ଆସିବ, ରାତି ପର୍ଯ୍ୟନ୍ତ ସମସ୍ତଙ୍କୁ ଖାଇବାକୁ ଦେବୁ । ମାଇଁମାନେ, ନାନୀମାନେ ବୁଝିବେ । ବ୍ୟସ୍ତ ହୋଇପଡ଼ିବୁ ନାହିଁ ।

ରହିଲିରେ ବାପ । ଆଉ ଲେଖିପାରୁନି । ମେରୁଦଣ୍ଡର ପ୍ରତିଟି ଶିରା ପ୍ରଶିରା ଯନ୍ତ୍ରଣାରେ ଫାଟି ଫାଟି ପଡ଼ିଲାଣି । ତୋ'ଠାରୁ ବିଦାୟ ନେଇ ରହୁଛି ।

॥ ଇତି ॥

ତୋର ବୋଉ